# ପୁରାଣ କଥା

ତୃତୀୟ ଭାଗ



ଷ୍ଟୁଡେଣ୍ଟସ୍ ଷ୍ଟୋର-ବ୍ରହ୍ମପୁର

ସଚିତ୍ର

# ପୁରାଣ କଥା

ତୃତୀୟ ଭାଗ

ଜନୈକ ଶିକ୍ଷକ

ପ୍ରଣୀତ



# PURANA-KATHA

## PART III

BY

## AN EXPERIENCED TEACHER

ପରିବର୍ତ୍ତିତ ପଞ୍ଚମ ସଂସ୍କରଣ

**PUBLISHED by**

THE STUDENTS' STORE

BERHAMPUR

1948

ଅତିରିକ୍ତ ମୂଲ୍ୟ ସହ ପାଞ୍ଚଣା

# ସୂଚୀ

# ପୁରାଣ କଥା

## ତୃତୀୟ ଭାଗ



## ଶିବିରାଜା

ଅନେକ ବର୍ଷ ଆଗେ ଆମ ଦେଶରେ ଶିବ ନାମରେ ଜଣେ ରାଜା ଥିଲେ । ସେ ବଡ଼ ଧାର୍ମିକ ଥିଲେ ଏବଂ ପରର ଉପକାର କରୁଥିଲେ । ଯେଉଁ ଲୋକ ତାଙ୍କଠାରେ ଶରଣ ପଶୁଥିଲା ସେ ତାକୁ ଯେ କୌଣସି ମତେ ରକ୍ଷା କରୁଥିଲେ ।

ଥରେ ଶିବ ଦେବାର୍ଚ୍ଚନ ସାର ସିଂହାସନରେ ବସିଛନ୍ତି, ଏପରି ସମୟରେ ଗୋଟିଏ କପୋତ ପ୍ରାଣ ବିକଳରେ ଉଡ଼ି ଆସି ତାଙ୍କ କୋଳରେ ପଶିଗଲା । ରାଜା ଦେଖିଲେ ଛଞ୍ଚାଣଟିଏ କପୋତର ପଛେ ପଛେ ଲାଗିଛି । କପୋତ ବିକଳସ୍ୱରରେ କହିଲା, "ମହାରାଜ, ଏ ଛଞ୍ଚାଣ ମୋତେ ଖାଇବାକୁ ଗୋଡ଼ାଉଛି, ରକ୍ଷା କର ।" ଦୟାଳୁ ଶିବ

ତାହା ଶୁଣି କହିଲେ, "କିଛି ଭୟ ନାହିଁ, ମୁଁ ଥାଉ ଥାଉ କେହି ତୋର ଅନିଷ୍ଟ କରି ପାରିବ ନାହିଁ ।" ଏ କଥା ଶୁଣି ଛଞ୍ଚାଣ ନିକଟକୁ ଆସି କହିଲା, "ମହାରାଜ ! ଆପଣ ବଡ଼ ଧାର୍ମିକ, ନ୍ୟାୟପରାୟଣ ବୋଲି ଜଗତରେ ସମସ୍ତେ ଜାଣନ୍ତି, ଏବେ ମୋ ପ୍ରତି କାହିଁକି ଅନ୍ୟାୟ କରୁଛନ୍ତି ? ଏ କପୋତ ମୋର ଖାଦ୍ୟ । ମୁଁ ଶିକାରୀ ପକ୍ଷୀ; ମାଂସ ମୋହର ପ୍ରଧାନ ଆହାର । ମୁଁ ବର୍ତ୍ତମାନ କ୍ଷୁଧାରେ ଅତୁର । ମହାରାଜ, ମୋ ଆହାର ମୋତେ ଛାଡ଼ି ଦିଅନ୍ତୁ ।"

ରାଜା ଟିକିଏ ଭାବି ଚିନ୍ତି ଛଞ୍ଚାଣକୁ କହିଲେ, "ଏହିକ୍ଷଣି ସଜ ମୃଗମାଂସ ଅଣାଇ ଦେବି, ତାହା ଖାଇ ସୁଖୀ ହୁଅ ।" ଛଞ୍ଚାଣ ଜଣାଇଲା, "ମହାରାଜ, ମୁଁ କେବଳ ଶିକାର କରି ମାଂସ ଖାଏ, ଅନ୍ୟ ମାଂସ ମୁଁ ଗ୍ରହଣ କରେ ନାହିଁ; ଏଣୁ କପୋତଟିକୁ ମୋତେ ଦିଅନ୍ତୁ ।"

ଏହା ଶୁଣି ରାଜାଙ୍କର ବୁଦ୍ଧି ହଜିଗଲା । କଣ କରିବେ ସେ କିଛି ଭାବି ପାରିଲେ ନାହିଁ । କପୋତକୁ ଅଭୟ ଦେଇଛନ୍ତି, ଛାଡ଼ିଦେବେ କିପରି ? ଯଦି ଛାଡ଼ନ୍ତି, ତାଙ୍କ ଆଖି ଆଗରେ ଛଞ୍ଚାଣ କପୋତକୁ ଟିକି ଟିକି କରି ଖାଇଦେବ । ଯଦି ନ ଛାଡ଼ନ୍ତି, ଅନ୍ୟର ମୁହଁରୁ ଆହାର ଛଡ଼ାଇ ଅଣିବା ପାପରେ ସେ ପଡ଼ିବେ ।

ଏପରି କେତେକଥା ଭାବି—ଶେଷରେ ରାଜା ଛଞ୍ଚାଣକୁ କହିଲେ, "ତୋର ଯହିଁରେ କ୍ଷୁଧା ନିବାରଣ ହେବ, ତାହା ଦେବାକୁ ମୁଁ ପ୍ରସ୍ତୁତ । ସତ୍ୟ କରି କହୁଛି, ଜୀବନ ଗଲେ ସୁଦ୍ଧା ତାହା ନିଶ୍ଚୟ ଦେବି; କିନ୍ତୁ କପୋତକୁ ଛାଡ଼ି ପାରିବି

ନାହିଁ । ମୁଁ ଯେ ତାହାକୁ ଶରଣ ଦେଇ ସାରିଛି ।" ଏହା ଶୁଣି ଛଞ୍ଚାଣ କହିଲା, "ମହାରାଜ, କପୋତ ପ୍ରତି ଆପଣଙ୍କର ଯଦି ଏତେ ଦୟା, ମମତା ଅଛି, ତାହାହେଲେ ତାର ଓଜନ ମାଂସ ତୁମ ଦେହରୁ ଲେଇ କାଟି ମୋତେ ଦେଲେ, ମୁଁ ସନ୍ତୁଷ୍ଟ ହୋଇ ଚାଲିଯିବ ।"

ରାଜା ଭାରି ଆନନ୍ଦିତ ହେଲେ । ସେହିକ୍ଷଣି ତୁଳାଦଣ୍ଡ ଓ ଧାରୁଆ ଛୁରୀ ଖଣ୍ଡେ ଅଣାଇଲେ । କପୋତକୁ ତୁଳା-ଦଣ୍ଡର ଗୋଟିଏ ପାଖରେ ରଖିଲେ । ନିଜ ଦେହରୁ ମାଂସ କାଟି ଅନ୍ୟ ପାଖରେ ପକାଇଲେ । କିନ୍ତୁ କପୋତ ଭାରି ହେଲା । ପୁନର୍ବାର ଦେହରୁ ମାଂସ କାଟି ରଖିଲେ, ତଥାପି



ସମାନ ହେଲା ନାହିଁ । ଆଉ ଥରେ ମାଂସ କାଟି ରଖିଲେ । କପୋତର ଓଜନ ସଙ୍ଗେ ଖାପ ଖାଇଲା ନାହିଁ । ଏପରି ଥରକୁ

ପରେ ନିଜ ଦେହରୁ ମାଂସ କାଟି ନିକ୍ତିରେ ରଖିଲେ । ଶେଷରେ ନିଜ ଦେହଟିର ପ୍ରାୟ ସବୁ ମାଂସ କାଟି ଓଜନ କଲେ; ସେତିକିରେ ମଧ୍ୟ କପୋତ ଭାରୀ ହୋଇ ରହିଲା । ଅନ୍ତ କିଛି ନପାରି ରାଜା ନିଜେ ତୁଳା ଦଣ୍ଡରେ ବସି ପଡ଼ିଲେ । ଏବେ ଯାଇ ଓଜନ ଠିକ୍ ହେଲା ।

ଏହା ଦେଖି ରାଜଦରବାରର ଲୋକେ ହାହାକାର କଲେ । କେ କାନ୍ଦିଲା, କେ ବା ଏହି ଦୃଶ୍ୟ ଦେଖି ନଗର ସଭାଗୃହରୁ ଚାଲିଗଲା । ସାଧୁମାନେ ଧନ୍ୟ ଧନ୍ୟ କଲେ । ସ୍ୱର୍ଗରୁ ପୁଷ୍ପବୃଷ୍ଟି ହେଲା । କିନ୍ତୁ ଆଶ୍ଚର୍ଯ୍ୟର କଥା କ୍ଷଣକ ମଧ୍ୟରେ ରାଜାଙ୍କର ଯେପରି ଦେହ ସେପରି ହୋଇଗଲା । କପୋତ ଓ ଚାଞ୍ଚାଣ ଦୁହେଁ କହିଲେ, "ଆମେ ଇନ୍ଦ୍ର ଓ ଅଗ୍ନି । ଆପଣଙ୍କର ଧର୍ମଭାବ ପରୀକ୍ଷା କରିବା ପାଇଁ ଚାଞ୍ଚାଣ ଓ କପୋତ ବେଶରେ ଆସିଥିଲୁ । ଆପଣଙ୍କ ପରି ଦାତା, ବୀର, ମହାପୁରୁଷ, ପରୋପକାରୀ ଆମେ ଏ ମର୍ତ୍ତ୍ୟଲୋକରେ ଅନ୍ୟ କାହାକୁ ଦେଖି ନାହୁଁ । ଆମେ ଆଶୀର୍ବାଦ କରୁଛୁଁ, ଆପଣ ସୁଖ ଶାନ୍ତିରେ ଅନେକ କାଳ ରାଜତ୍ୱ କରି ମନୁଷ୍ୟ ଦେହ ବହି ସ୍ୱର୍ଗକୁ ଯିବେ ।" ଏହା କହି ସେମାନେ ଅନ୍ତର୍ଦ୍ଧାନ ହେଲେ ।

ସର୍ବେ ଚଳିବେ କାଳବଳେ,
କଥା ରହିବ ମହୀତଳେ ।

## ଗୁରୁ ଓ ଶିଷ୍ୟ

ଜଣେ ଭାରି ଜାଣିବା ଋଷି ଥିଲେ । ତାଙ୍କର ଦୁଇ ଜଣ ଶିଷ୍ୟ । ସେମାନେ ପଢ଼ା ପଢ଼ି କରି ମନ୍ତ୍ରଆଦି ଶିଖି ସାରି ଗୁରୁଙ୍କ ନିକଟରୁ ବିଦାୟ ନେଉଥିଲେ । ଗୁରୁ ସେମାନଙ୍କୁ ବିଦାୟ ଦେବା ପୂର୍ବରୁ ଦକ୍ଷିଣା ମାଗିଲେ ।

ସେ ପ୍ରଥମ ଶିଷ୍ୟକୁ କହିଲେ, "ମୋତେ ଭୋକ କରୁଛି । ମାଂସ ଖାଇବାକୁ ମୋର ଇଚ୍ଛା ହେଉଛି, ଏଣୁ ତୁମେ ଗୋଟିଏ ଜୀବ ମାରି ଆଣିବ । ତାକୁ ମାରିବା ବେଳେ ଯେପରି କେହି ତୁମକୁ କିମ୍ବା ସେ ଜନ୍ତୁକୁ ଦେଖି ପାରିବେ ନାହିଁ ବା ସେ କଥା ଶୁଣି ପାରିବେ ନାହିଁ ।" ଅନ୍ୟ ଶିଷ୍ୟକୁ କହିଲେ, 'ତୁମେ ମୋ ପାଇଁ ଗୋଟିଏ ଅଲୋଡ଼ା ପଦାର୍ଥ ଆଣିବ ।'

ଦୁଇଜଣ ଶିଷ୍ୟ ଭିନ୍ନ ଭିନ୍ନ ଦିଗରେ ବାହାରିଲେ । ପ୍ରଥମ ଶିଷ୍ୟ ଲୋକ ଗହଳି ନଥିବା ଦେଖି ଗୋଟିଏ ଦେଉଳରେ ପଶି ପାରିଟିଏ ଧରିଲା । ତାକୁ ମାରିବା ପାଇଁ ବସିଲା, କିନ୍ତୁ ଭାବିଲା, 'ମୁଁ କିପରି ମାରିବି ? ଅଷ୍ଟଦିଗପାଳ, ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ଅଗ୍ନି ଏବଂ ସର୍ବବ୍ୟାପୀ ନାରାୟଣ ତ ମୋତେ ଆଉ ପାରିକୁ ଦେଖୁଅଛନ୍ତି । ମୁଁ ନିଜେ ଯେ ତାକୁ ଦେଖୁଛି, ସେ ମୋତେ ଦେଖୁଛି । ଏହିପରି ଅବସ୍ଥାରେ ମୁଁ ତାକୁ କିପରି ମାରିବି ?'' ଏହା ଭାବି ସେ ପାରିଟିକି ଧରି ଗୁରୁଙ୍କ ପାଖକୁ ବାହୁଡ଼ିଲା ।

ଏଣେ ଅନ୍ୟ ଶିଷ୍ୟଟି ବୁଲି ବୁଲି ଅନେକ ପଦାର୍ଥ ଦେଖିଲା; କିନ୍ତୁ ସେ ସବୁ ମଧ୍ୟରେ ଦରକାର ନହେବା ଜିନିଷ କିଛି ପାଇଲା ନାହିଁ । ଶେଷରେ ବିଷ୍ଠା କେବଳ ଅଲୋଡ଼ା ପଦାର୍ଥ ଭାବି ତାହା ଆଣିବାକୁ ଗଲା । କିନ୍ତୁ ଦେଖିଲା ବିଷ୍ଠାରେ ପୋକ ଯୋକ ସାଲୁ ବାଲୁ ହେଉଛନ୍ତି । ସେ ଆଗରୁ ଶୁଣିଥିଲା ଯେ, ବିଷ୍ଠା ଭୂମିର ପ୍ରଧାନ ସାର । ତେବେ ଜଗତରେ ଅଲୋଡ଼ା ପଦାର୍ଥ ରହିଲା କ'ଣ ? ଶିଷ୍ୟ ହତାଶ ହୋଇ ଗୁରୁଙ୍କପାଖକୁ ବାହୁଡ଼ିଲା ।

ଗୁରୁ ଦୁଇ ଜଣଙ୍କୁ ଫେରିବା ଦେଖି ଆନନ୍ଦରେ ପ୍ରଥମ ଶିଷ୍ୟକୁ ପଚାରିଲେ, "ବାବା, ମାଂସ ଆଣିଲ'' ?

ପ୍ରଥମ ଶିଷ୍ୟ:—"ପ୍ରଭୋ କ୍ଷମା କରିବେ; ମୁଁ କେଉଁଠାରେ ଜୀବବଧ କରିବା ପାଇଁ ସ୍ଥାନ ପାଇଲି ନାହିଁ, ଯେଉଁଠାକୁ ଯାଏ ସେଠାରେ ଭଗବାନ୍, ସୂର୍ଯ୍ୟ, ଚନ୍ଦ୍ର, ଅଷ୍ଟଦିଗପାଳ ମନ୍ତେ ମୋତେ ଦେଖୁଛନ୍ତି—ଏଣୁ ପକ୍ଷିଟିଏ ଧରି ଆସିଛି।" ଗୁରୁ ସନ୍ତୁଷ୍ଟ ହୋଇ କହିଲେ, "ପୁତ୍ରର କଥା, ତୁମେ ଭଗବାନଙ୍କୁ ଚିହ୍ନି ପାରିଛ। ତାଙ୍କର ସୃଷ୍ଟ ଜୀବକୁ ନଷ୍ଟ ନକରି ରକ୍ଷା କରିବାର ଶିଖିଛ। ତୁମର ଏହି ଅମୂଲ୍ୟ ଶିକ୍ଷାହିଁ ମୋର ଦକ୍ଷିଣା। ଦକ୍ଷିଣା ମୋର ପାଇଲି। ଏବେ ତୁମେ ଆନନ୍ଦରେ ଗୃହକୁ ଫେରିଯାଅ।"

ଅନ୍ୟ ଶିଷ୍ୟକୁ ପଚାରିଲେ, "ବତ୍ସ, କି ଅଲୋଡ଼ା ପଦାର୍ଥ ଆଣିଛ?" ସେ କହିଲେ, 'ପ୍ରଭୋ, ମୁଁ ଅନେକ ସ୍ଥାନ ବୁଲି ଦେଖିଲି ଅଲୋଡ଼ା ପଦାର୍ଥ ହୋଇ ଜଗତରେ କିଛି ନାହିଁ।' ଗୁରୁ ଆନନ୍ଦରେ କହିଲେ, "ତୁମେ ବୁଝିପାରୁଛ ଯେ ଈଶ୍ୱରସୃଷ୍ଟ ପ୍ରତ୍ୟେକ ପଦାର୍ଥ ଯେ କୌଣସି କାମରେ ଆସେ। ଅଲୋଡ଼ା ହୋଇ ପଦାର୍ଥ ନାହିଁ। କୌଣସି ବସ୍ତୁ ତୁଚ୍ଛ ବା ହୀନ ନୁହେ। ଆନନ୍ଦର ବିଷୟ, ତୁମେ ଏ ମହା ମୂଲ୍ୟ ଶିକ୍ଷା ଲାଭ କରିଅଛ। ଏଣୁ ତୁମେ ଏବେ ନିଜ ଗୃହକୁ ଫେରିଯାଅ।"

ଉଭୟେ ଗୁରୁଙ୍କୁ ପ୍ରଣାମ କରି ଆନନ୍ଦରେ ନିଜ ନିଜ ଘରକୁ ଫେରିଲେ।

**ସର୍ବ ଘଟରେ ନାରାୟଣ**
**କରନ୍ତି ଲୋକର କଲ୍ୟାଣ।**



# ପିତାଙ୍କ ପାଇଁ ପୁତ୍ରର ତ୍ୟାଗ

ଶାନ୍ତନୁ ନାମରେ ଜଣେ ବଡ଼ ରାଜା ଥିଲେ । ସେ ଥରେ ବୁଲି ବାହାରିଲେ । ବାଟରେ ଗୋଟିଏ କେଉଟ ଘରର ଝିଅକୁ ଦେଖିଲେ । ସେତେବେଳେ ତାର ବୟସ ପନ୍ଦର, ଦେହର ବର୍ଣ୍ଣ ଚମ୍ପା ଫୁଲ ପରି । କେଉଟ ଘରେ ଏତେ ରୂପବତୀ ଯୁବତୀକୁ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାନ୍ତି । ଶାନ୍ତନୁ ସେହି କନ୍ୟାକୁ ବିବାହ କରିବା ପାଇଁ ଇଚ୍ଛା କଲେ । ସେ କେଉଟକୁ ଏ କଥା ଜଣାଇଲେ । କେଉଟ କହିଲା, "ମୁଁ ଝିଅ ଦେବି ସତ, ମାତ୍ର ତା ଗର୍ଭରୁ ଯେଉଁ ପୁଅ ଜନ୍ମ ହେବ ସେ ରାଜା ହେବା ପାଇଁ ଆପଣ ସତ୍ୟ କରନ୍ତୁ ।" ଏ କଥା ଶୁଣି ରାଜା ଦୁଃଖରେ ଘରକୁ ବାହୁଡ଼ି ଆସିଲେ ।

ଥରେ ଶାନ୍ତନୁ ଦୁଃଖରେ ବସିଅଛନ୍ତି, ତାଙ୍କର ଏକ ମାତ୍ର ପୁତ୍ର ଦେବବ୍ରତ ସେଠାରେ ଆସି ଉପସ୍ଥିତ ହେଲେ । ସେ ପିତାଙ୍କ ମଳିନ ମୁଖ ଦେଖି ଦୁଃଖର କାରଣ ପଚାରିଲେ; କିନ୍ତୁ ରାଜା କିଛି କହିଲେ ନାହିଁ । ଦେବବ୍ରତ ମନ୍ତ୍ରୀଙ୍କଠାକୁ ଯାଇ ସବୁ କଥା ବୁଝିଲେ । ସେ ସେହିକ୍ଷଣି ସେହି କେଉଟ ଘରକୁ ଗଲେ ଏବଂ ତାଙ୍କ ପିତାଙ୍କ ସଙ୍ଗେ ତା କନ୍ୟାର ବିବାହ ଦେବା ପାଇଁ ତାକୁ ଅନୁରୋଧ କଲେ । କେଉଟ ବିନୀତ ଭାବରେ କହିଲା, "ଯୁବରାଜ, ତୁମେ ଗୁଣବାନ, ଧାର୍ମିକ ଓ ମହାବୀର । ତୁମେ ରାଜଗାଦିର ଉପଯୁକ୍ତ ପାତ୍ର । ମୁଁ ମୋର ଝିଅକୁ ବିବାହ ଦେଲେ ତା ପୁଅ ତ ରାଜଗାଦିରେ ବସି ପାରିବ ନାହିଁ । ଏହା ଜାଣି ଜାଣି ମୁଁ କିପରି ଝିଅକୁ ଦେବି ?" ଏହା ଶୁଣି ଦେବବ୍ରତ ପ୍ରତିଜ୍ଞା କରି କହିଲେ—"ମୁଁ ରାଜଗାଦି ଗ୍ରହଣ କରିବି ନାହିଁ । ତୁମ ଝିଅର ପୁଅମାନେହିଁ ରାଜ୍ୟର ଅଧିକାରୀ

ହେବେ ।" କେଉଟ ସନ୍ତୁଷ୍ଟ ହୋଇ କହିଲା, "ଦେବବ୍ରତ, ତୁମର ପ୍ରତିଜ୍ଞା ଅଟଳ, ମୁଁ ଜାଣେ, କିନ୍ତୁ ଆଶଙ୍କା ହେଉଛି ତୁମ ପୁଅ ନାତିମାନେ ମୋର ଝିଅର ପିଲାଙ୍କ ସହିତ କଳହ କରିବେ ।



ସେତେବେଳେ ରାଜ୍ୟ ନାରଖାର ହେବ ଓ ସମସ୍ତେ ଯୁଦ୍ଧ କରି ମରିବେ ।"

ଦେବବ୍ରତ ଏହା ଶୁଣି ଦୃଢ଼ ଭାବରେ ଶପଥ କଲେ ଯେ, ସେ କେବେ ବିବାହ କରିବେ ନାହିଁ । ଏ କଥାରେ ପାଖରେ ଥିବା ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । ଶୂନ୍ୟରୁ ତାଙ୍କ ମୁଣ୍ଡରେ ପୁଷ୍ପ ବୃଷ୍ଟି ହେଲା । ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କଲେ । 'ଭୀଷଣ ପ୍ରତିଜ୍ଞା କରିବାରୁ ସେହିଦିନଠାରୁ ତାଙ୍କୁ ଦେବତାମାନେ 'ଭୀଷ୍ମ' ବୋଲି ଡାକିଲେ ।

କେଉଟ ନିଜ କନ୍ୟା ସତ୍ୟବତୀଙ୍କୁ ଶାନ୍ତନୁଙ୍କୁ ବିବାହ ଦେବା ପାଇଁ ସ୍ୱୀକୃତ ହେଲା । ଭୀଷ୍ମଙ୍କ ପ୍ରତିଜ୍ଞା ଫଳରେ ଶାନ୍ତନୁ ସତ୍ୟବତୀଙ୍କ ସଙ୍ଗେ ସୁଖରେ ରହିବାକୁ ଲାଗିଲେ ।

ପିତୃଭକ୍ତ ଭୀଷ୍ମ ପିତାଙ୍କ ପାଇଁ ରାଜଗାଦି ଛାଡ଼ିଲେ —ବିବାହ କଲେ ନାହିଁ । ଜୀବନ ଯାକ ବ୍ରହ୍ମଚାରୀ ହୋଇ ରହିଲେ ।

**ପିତା ମାତା ସମ ଆଉ କେ ଅଛି ସଂସାରେ**
**ଦିଅ ସର୍ବେ ମନ ପ୍ରାଣ ତାଙ୍କରି ସେବାରେ ।**



# ଆତାପି ଓ ବାତାପି

ଅନେକ ଦିନ ତଳେ ଗୋଟିଏ ବଣରେ ଆତାପି ଓ ବାତାପି ବୋଲି ଦୁଇ ଜଣ ଅସୁର ଥିଲେ । ସେମାନେ ଦୁଇ ଭାଇ । ତେଣୁ ଦୁହିଁଙ୍କ ମଧ୍ୟରେ ଭାରି ସ୍ନେହ । ସେମାନେ ବଡ଼ ମାୟାବୀ । ଇଚ୍ଛା କଲେ ନାନା ରୂପ ଧରି ପାରୁଥିଲେ । ବ୍ରାହ୍ମଣ ଦେଖିଲେ ତାଙ୍କୁ ଆଦର କରି ଘରକୁ ନେଇଯାନ୍ତି । ବାତାପି ଗୋଟିଏ ମେଣ୍ଢା ରୂପ ଧରେ । ତାକୁ ଆତାପି ହାଣି କାଟି ରନ୍ଧେ । ସେହି ମାଂସ ବ୍ରାହ୍ମଣଙ୍କୁ

ଖାଇବାକୁ ଦଏ । ବ୍ରାହ୍ମଣ ଗ୍ରାସେ ଖାଇ ଓଳଗ ମାରିବା ବେଳକୁ ଅତାପି ବଡ଼ ପାଟି କରି ବାତାପିର ନାମ ଧରି ଡାକେ । ବାତାପି ବ୍ରାହ୍ମଣର ପେଟ ଫଟାଇ ବାହାରିକୁ ଚାଲି ଆସେ । ଦୁଇ ଭାଇ ଏହିପରି ମନୁଷ୍ୟ ମାରନ୍ତି ।

ଦିନେ ଅଗସ୍ତି ମୁନି ସେହି ବାଟେ ଯାଉଥିଲେ । ତାଙ୍କୁ ଦେଖି ଅତାପି ମହାନନ୍ଦରେ ନିମନ୍ତ୍ରଣ କରି ଘରକୁ ନେଲା । ବାତାପି ସେହି ପରି ମେଣ୍ଢା ହେଲା । ତାହାର ମାଂସରେ ଭଲ ଭଲ ତରକାରୀ ତିଆରି ହେଲା । ଖାଇବା ପାଇଁ ମୁନିଙ୍କ ଆଗରେ ବଢ଼ା ହେଲା । ଅଗସ୍ତି ଖାଇ ସାରି ପାଣି ପିଇବା ବେଳକୁ ଅତାପି ଉଚ୍ଚସ୍ୱରରେ ବାତାପିକୁ ଡାକିଲା । ଅଗସ୍ତିଙ୍କର ଅଜଣା ଅଛି କଣ ? ଅତାପିର ଡାକ ଶୁଣି ସେ ପେଟଟି ଆଉଁସି ଦେଇ ହସୁଁ ହସୁଁ କହିଲେ, "ବାତାପି ଏହି ବ୍ରହ୍ମ ଅଗ୍ନିରେ ଭସ୍ମ ହୁଅ ।" ସେହିକ୍ଷଣି ବାତାପି ପେଟ ମଧ୍ୟରେ ଭସ୍ମ ହୋଇଗଲା । ଏଣେ ଅତାପିକୁ କ୍ରୋଧରେ ଚାହିଁଦେବା ମାତ୍ରକେ ସେ ମଧ୍ୟ ଜଳିଗଲା । ସେଠାରୁ ଅଗସ୍ତି ଫେରି ଆସିଲେ ।

ଦୁଇ ଭାଇ ମରିବାରୁ ସେ ବାଟରୁ ଭୟ ଛାଡ଼ିଗଲା । ସମସ୍ତେ ସେ ବାଟେ ନିର୍ଭୟରେ ଯିବା ଆସିବା କରି ପାରିଲେ ।

ଯେ ପ୍ରାଣୀ ରହେ କଟକୁଟେ,
ଗୋବିନ୍ଦ ମାରନ୍ତି କପଟେ ।



## ନ୍ୟାୟ ବିଚାର

ଶ୍ରୀରାମଚନ୍ଦ୍ର ବନବାସ କରି ସାରି ଅଯୋଧ୍ୟାର ରାଜା ହେଲେ । ନ୍ୟାୟରେ, ଧର୍ମରେ, ସୁଖରେ ପ୍ରଜା ପାଳିବାକୁ ଲାଗିଲେ । ଏଣୁ

ଋଷି, ବ୍ରାହ୍ମଣ, ପଣ୍ଡିତ, ପିଲା, ବୁଢ଼ା ସମସ୍ତଙ୍କର ମୁଖରୁ ରାମଚନ୍ଦ୍ରଙ୍କ ସ୍ତୁତି ଶୁଣାଗଲା ।

ଏପରି କିଛି କାଳ ଗଲା । ଦିନେ ଜଣେ ଋଷି ରାମଚନ୍ଦ୍ରଙ୍କ ନିକଟକୁ ଯାଇ କହିଲେ, "ମୁଁ ଆପଣଙ୍କୁ ଗୋଟାଏ ଗୁପ୍ତ ବାର୍ତ୍ତା ଜଣାଇବା ପାଇଁ ଆସିଛି । ଆମ୍ଭେ ଦୁଇଜଣ କଥାବାର୍ତ୍ତା କଲାବେଳେ ଏଠାରେ ଅନ୍ୟ କେହି ପ୍ରବେଶ କରିବାକୁ ହେବ ନାହିଁ । ଭିତରକୁ କାହାକୁ ନ ଛାଡ଼ିବା ପାଇଁ ଜଣେ ବିଶ୍ୱାସୀ ଲୋକଙ୍କୁ ଦ୍ୱାରରେ ଜଗାନ୍ତୁ । ଯଦି କେହି କୌଣସି କାରଣରୁ ଏହିବେଳେ ଏଠାକୁ ଆସେ, ତାହାହେଲେ ତାହାର ମୃତ୍ୟୁଦଣ୍ଡ ହେବ ବୋଲି ଆଜ୍ଞା ଦିଅନ୍ତୁ ।" ରାମଚନ୍ଦ୍ର କିଛିକ୍ଷଣ ଭାବିଲେ; ଯେଉଁ ପ୍ରାଣାଧିକ ଭାଇ ଲକ୍ଷ୍ମଣ ବାର ବର୍ଷ କାଳ ନଖାଇ, ନପିଇ, ନଶୋଇ ଦିନ ରାତି ହିଂସ୍ର ଜନ୍ତୁ ଓ ରାକ୍ଷସପୂର୍ଣ୍ଣ ବନରେ ତାଙ୍କୁ ଜଗି ରହିଥିଲେ, ସେ କେବଳ ଏ କାର୍ଯ୍ୟକୁ ଯୋଗ୍ୟ ହୋଇ ପାରନ୍ତି । ପରେ ସେ ଲକ୍ଷ୍ମଣଙ୍କୁ ଡାକି, ସମସ୍ତ ବିଷୟ କହି ଦ୍ୱାରଦେଶରେ ଜଗିବା ପାଇଁ ଆଦେଶ ଦେଲେ ।

ଲକ୍ଷ୍ମଣ ଜଗିଲେ । ଋଷି ରାମଚନ୍ଦ୍ରଙ୍କୁ ଜଣାଇଲେ, 'ପ୍ରଭୋ ! ମୁଁ କାଳ । ଆପଣଙ୍କୁ କେତେକ ବିଷୟ ଜଣାଇବା ପାଇଁ ଦେବତାମାନେ ମୋତେ ଋଷି ବେଶରେ ଏଠାକୁ ପଠାଇଛନ୍ତି । ଆପଣ ରାକ୍ଷସକୁଳ ନାଶ କରି, ଅନ୍ୟାୟ ଅତ୍ୟାଚାର ଦୂର କରି, ନ୍ୟାୟ ଓ ସତ୍ୟ ପ୍ରତିଷ୍ଠା କରିଅଛନ୍ତି । ଆପଣ ଯେଉଁ କାର୍ଯ୍ୟ ଲାଗି ପୃଥିବୀକୁ ଆସିଥିଲେ, ସେହି କାର୍ଯ୍ୟପୂର୍ଣ୍ଣ ହୋଇଅଛି । ବର୍ତ୍ତମାନ ଆପଣ ଶୀଘ୍ର ବୈକୁଣ୍ଠକୁ ଫେରି ଦେବତାମାନଙ୍କ ଆନନ୍ଦ ବଢ଼ାନ୍ତୁ ।'

ଏହିପରି କଥାବାର୍ତ୍ତା ହେବା ସମୟରେ ଦୁର୍ବାସା ଋଷି ସେହି ଦ୍ୱାରରେ ଆସି ପହଞ୍ଚିଗଲେ । ସେ ରାମଚନ୍ଦ୍ରଙ୍କ ସାକ୍ଷାତ ପାଇଁ

ଉତ୍ତରକୁ ଫିବାକୁ ଉଦ୍ୟତ ହେଲେ । ଲକ୍ଷ୍ମଣ ମନା କରିବାରୁ ଋଷି କ୍ରୋଧରେ ଜଳଜଳ ହୋଇ କହିଲେ, "ମୁଁ କ୍ଷୁଧାରେ ଅତୁର; କିଛି ଖାଦ୍ୟ ପଦାର୍ଥ ମାଗିବା ପାଇଁ ରାମଚନ୍ଦ୍ରଙ୍କଠାକୁ ଯାଉଛି । ତୁମେ ଯଦି



ମତେ ଭିତରକୁ ନଛାଡ଼, ସାବଧାନ । ମୋର କ୍ରୋଧାଗ୍ନିରେ ଅଯୋଧ୍ୟା ପୋଡ଼ି ଛାରଖାର କରିଦେବି ।" ଲକ୍ଷ୍ମଣ ଏକାବେଳକେ

ଦେଇଥିଲେ । କଣ କରିବେ, ତାଙ୍କ କିଛି ବୁଦ୍ଧି ଦିଶିଲା ନାହିଁ । କିଛିକ୍ଷଣ ପରେ ମନ ସ୍ଥିର କରି ଭାବିଲେ, "ମନୁଷ୍ୟର ଜୀବନ ତ ପାଣି ଫୋଟକା ପରି ଅସ୍ଥାୟୀ । ଜନ୍ମ ପରେ ମରଣ ନିଶ୍ଚୟ ହେବ । ଏହି ସାମାନ୍ୟ ଜୀବନ ପାଇଁ ଋଷିଙ୍କୁ ଅପମାନ ଦେଇ ଅଯୋଧ୍ୟାକୁ ଭସ୍ମ କରାଇ ଦେବା ମୋର ଉଚିତ ନୁହେଁ ।" ଏହା ଭାବି ସେ ହଠାତ୍ ଭିତରେ ପ୍ରବେଶ କଲେ । ସେତେବେଳକୁ ରାମଚନ୍ଦ୍ର ଓ କାଳଙ୍କ କଥାବାର୍ତ୍ତା ପ୍ରାୟ ସରିଛି । ଲକ୍ଷ୍ମଣ କହିଲେ "ମହାରାଜ ! ଦୁର୍ବାସା ଋଷି ଆପଣଙ୍କ ସାକ୍ଷାତ ପାଇଁ ଅସି ଦ୍ୱାରରେ ଅଛନ୍ତି ।" ଏହା ଶୁଣି କାଳଋଷି ସେଠାରୁ ଚାଲିଗଲେ । ପରେ ରାମଚନ୍ଦ୍ର ଦୁର୍ବାସାଙ୍କୁ ନିକଟକୁ ଡକାଇ ତାହାଙ୍କୁ ନାନା ପ୍ରକାର ଭଲ ପଦାର୍ଥ ଖାଇବାକୁ ଦେଇ ତୁଷ୍ଟ କଲେ ।

ଦୁର୍ବାସାଙ୍କ ପ୍ରସ୍ଥାନ ପରେ ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ସଙ୍ଗେ ଧରି ବିଗ୍ରହ ଗୃହକୁ ଗଲେ । ଲକ୍ଷ୍ମଣ ରାମଚନ୍ଦ୍ରଙ୍କ ଆଦେଶ ଅମାନ୍ୟ କରିବାରୁ ତାଙ୍କୁ ଦଣ୍ଡ ଦେବାପାଇଁ ଦରବାରରେ ବିଗ୍ରହ ହେଲା । ଏହା ଦେଖି ସଭାରେ ଥିବା ସମସ୍ତ ଲୋକଙ୍କ ଆଖିରୁ ଝରଝର ଲୁହ ବହିଗଲା । ସେମାନେ ଏକ ସ୍ୱରରେ ରାମଚନ୍ଦ୍ରଙ୍କୁ କହିଲେ, "ଚିରକାଳ ପାଇଁ ଜଣେ ଲୋକକୁ ତ୍ୟାଗ କରିବା କିମ୍ବା ତାକୁ ମାରିଦେବା ଏକା କଥା । ଏଣୁ ଏହାଙ୍କୁ ବଧ ନକରି ରାଜ୍ୟ ବାହାରେ ଛାଡ଼ି ଦେବା ଭଲ ।" ରାଜ୍ୟରେ ଧର୍ମ ଓ ସତ୍ୟ ରକ୍ଷା ଲାଗି ରାମଚନ୍ଦ୍ର ପ୍ରାଣପ୍ରିୟ ଲକ୍ଷ୍ମଣଙ୍କୁ ଚିରକାଳ ପାଇଁ ଘରୁ ଓ ରାଜ୍ୟରୁ ତଡ଼ି ଦେଲେ । ସମସ୍ତେ ରାମଚନ୍ଦ୍ରଙ୍କର ଧର୍ମ ବୁଦ୍ଧିକୁ ପ୍ରଶଂସା କଲେ ।

**ପିତା ମାତା ବା ବନ୍ଧୁଜନ**
**କେହି ନୁହନ୍ତି ସତ୍ୟସମ ।**



# କର୍ଣ୍ଣ ଓ ପରଶୁରାମ

କର୍ଣ୍ଣ ଜଣେ ସାରଥିଙ୍କର ପାଳିତ ପୁତ୍ର । ସେ ଅଠ ବର୍ଷ ବୟସରୁ ଦ୍ରୋଣଙ୍କ ପାଖରେ ଯୁଦ୍ଧ ବିଦ୍ୟା ଶିଖିଲେ, ମାତ୍ର ସେଥିରେ ତାଙ୍କ ମନ ମାନିଲା ନାହିଁ । ସକଳ ପ୍ରକାର ଯୁଦ୍ଧବିଦ୍ୟା ଶିଖି ପୃଥିବୀର ଜଣେ ବଡ଼ ଯୋଦ୍ଧା ହେବାକୁ ତାଙ୍କର ଭାରି ଇଚ୍ଛା । ଏଣୁ ସେ ଦ୍ରୋଣଙ୍କଠାରୁ ବିଦାୟ ନେଇ ପରଶୁରାମଙ୍କ ନିକଟକୁ ଗଲେ ।

ସେତେବେଳେ ପରଶୁରାମଙ୍କ ପରି ଯୁଦ୍ଧବିଦ୍ୟା ଜାଣିବା ଲୋକ ଆଉ କେହୁ ନ ଥିଲେ । ସେ କର୍ଣ୍ଣଙ୍କୁ ନିଜର ଶିଷ୍ୟ କରି ରଖିଲେ । ତାଙ୍କୁ ସକଳ ପ୍ରକାର ଅସ୍ତ୍ର ଶସ୍ତ୍ର ଶିଖାଇ ଦେଲେ ।

ପରଶୁରାମଙ୍କଠାରେ କର୍ଣ୍ଣଙ୍କର ଭାରି ଭକ୍ତି । ସେ ଗୁରୁଙ୍କୁ ମାନି ଚଳିଥାନ୍ତି । ସବୁବେଳେ ଗୁରୁସେବା କରୁଥାନ୍ତି । ଦିନେ ଶିଷ୍ୟମାନଙ୍କୁ ଧନୁର୍ବିଦ୍ୟା ଶିଖାଇବା ପରେ ପରଶୁରାମ ବଡ଼ ହାଲିଆ ହୋଇ ପଡ଼ିଲେ । କିଛି ସମୟ ବିଶ୍ରାମ ନେବାକୁ ମନ ବଳାଇଲେ । ସେ କର୍ଣ୍ଣଙ୍କ ତଳିର ଜଙ୍ଘ ଉପରେ ମୁଣ୍ଡ ଉଷ ଦେଇ ଶୋଇ ରହିଲେ । ଦେଖୁ ଦେଖୁଁ ତାଙ୍କୁ ବଡ଼ ନିଦ ଲାଗିଗଲା ।

ଗୁରୁଙ୍କର ନିଦରେ ବାଧା ନଦେବା ପାଇଁ କର୍ଣ୍ଣ ହଲଚଲ ନହୋଇ ଧୀର ସ୍ଥିର ଭାବରେ ବସି ରହିଲେ । ସେତିକିବେଳେ ଗୋଟିଏ ପୋକ କର୍ଣ୍ଣଙ୍କ ତଳିର ଜଙ୍ଘଟାକୁ ଖୁବ୍ ଜୋରରେ କାମୁଡ଼ି ଦେଲା । ସେହି ବାଧାରେ ସେ ବି ନିଶ୍ଚଳ ହୋଇ ବସି ରହିଲେ । କାମୁଡ଼ା କଷ୍ଟ ସହିଗଲେ ।



ଗୁହୁଁ ଗୁହୁଁ କର୍ଣ୍ଣଙ୍କ ଜଙ୍ଘରୁ ଧାର ଧାର ରକ୍ତ ବୋହିବାକୁ ଲାଗିଲା । କ୍ରମେ ସେହି ରକ୍ତରେ ପରଶୁରାମଙ୍କର ଗାଲ, ଦାଢ଼ି ଭିଜିଗଲା । ଏହି ସମୟରେ ପରଶୁରାମଙ୍କର ନିଦ ଭାଙ୍ଗି ଗଲା । ସେ

ଉଠି ଦେଖନ୍ତି ତ କର୍ଣ୍ଣଙ୍କ ଜଙ୍ଘରୁ ରକ୍ତ ସ୍ରୋତ ଚାଲିଛି । କାରଣ ପଚାରିବାରୁ କର୍ଣ୍ଣ ପୋକ କାମୁଡ଼ିବା କଥା କହିଲେ । ଏହା ଶୁଣି ପରଶୁରାମ ଏକାବେଳକେ ଚମକି ପଡ଼ିଲେ । ସେ କର୍ଣ୍ଣଙ୍କ ପ୍ରତି ଭାରି ସନ୍ତୁଷ୍ଟ ହେଲେ । ତାଙ୍କର ବୀରତ୍ୱ ଗୁରୁଭକ୍ତି ଓ ସହିଷ୍ଣୁତା ଦେଖି ଧନ୍ୟବାଦ ଦେଲେ । କର୍ଣ୍ଣ ଅଳ୍ପ କେତେ ଦିନ ପରଶୁରାମଙ୍କ ପାଖରେ ରହି ଘରକୁ ଫେରିଲେ ।

**ମସ୍ତକେ ଧରି ଗୁରୁ ବାଣୀ, ପାଳିବ ନିତ୍ୟ ଧନମଣି**
**ଗୁରୁ ସେ ଯେହୁଁ ଗୁଣ ଜ୍ୟେଷ୍ଠ, ପରମେଶ୍ୱର ଗୁରୁ ଶ୍ରେଷ୍ଠ ।**



## ପର ପାଇଁ ଜୀବନ ଦାନ

ପୂର୍ବକାଳରେ ଦଧୀଚି ନାମରେ ଜଣେ ବଡ଼ ଋଷି ଥିଲେ । ସେ ଭାରି ଦୟାଳୁ ପରୋପକାରୀ ଓ ବଡ଼ ଶିବଭକ୍ତ ।

ତାଙ୍କ ସମୟରେ ଗୋଟିଏ ଅସୁର ଜନ୍ମ ହେଲା । ତା ନାଁ ବୃତ୍ରାସୁର । ସେ ଗୋଟାଏ ବଡ଼ ବୀର ହେଲା । ସେ ମର୍ତ୍ତ୍ୟରେ ସମସ୍ତଙ୍କୁ ମାରି ଜବତ କରି ସ୍ୱର୍ଗକୁ ଗଲା । ସେଠାରେ ଦେବତାମାନେ ତା ସଙ୍ଗେ ଲଢ଼ିଲେ, ମାତ୍ର ପାରିଲେ ନାହିଁ । ହାରି ଯାଇ କିଏ କୁଆଡ଼େ ପଳାଇଲେ । ବୃତ୍ରାସୁର ସ୍ୱର୍ଗରୁ ଦେବତାମାନଙ୍କୁ ତଡ଼ି ଦେଇ ମହାଆନନ୍ଦରେ ରହିଲା ।

ଦେବତାମାନେ ହାରିଯିବାରୁ ଭଗବାନଙ୍କଠାରେ ଗୁହାରି କଲେ । ପ୍ରଭୁ ସେମାନଙ୍କ ବିକଳ ସହି ନପାରି, ଗୋଟିଏ କଥା ବତାଇ କହିଲେ, 'ତୁମ୍ଭେମାନେ ଦଧୀଚି ମହାଋଷିଙ୍କ ହାଡ଼ ଆଣି ସେଥିରେ ବଜ୍ର ତିଆରି କଲେ ସେହି ବଜ୍ରରେ ଅସୁର ମରିବ ।'

ଦେବତାମାନଙ୍କ ଭିତରେ ଭୁଲେଣି ପଡ଼ିଲା—"ଦଧୀଚି ମଲେ ସିନା ଆମେ ତାଙ୍କ ହାଡ଼ ଅଣିବା—ଆମପାଇଁ ସେ କଣ ଜୀବନ ଦେବେ ?" ଏହିପରି ନାନା କଥା ଭାବି ଭାବି ସେମାନେ ଦଧୀଚିଙ୍କ ଆଶ୍ରମକୁ ଗଲେ । ସେତେବେଳେ ଦଧୀଚି ଯୋଗଧ୍ୟାନରେ ବସିଥିଲେ । ଦେବତାମାନେ ଅପେକ୍ଷା କରି ବସି ରହିଲେ ।



ଯୋଗଧ୍ୟାନରୁ ଉଠିଲାରୁ ଦେବତାମାନେ ପ୍ରଣାମ କରି ତାଙ୍କ ଗୁହାରି ଜଣାଇଲେ । ଶେଷରେ କହିଲେ, "ଆପଣ ଦୟା ନକଲେ

ସ୍ୱର୍ଗ ମର୍ତ୍ତ୍ୟ ସବୁ ଧ୍ୱଂସ ହେବ—ସମସ୍ତେ 'ମର୍ ଧୂଳି ପାଉଁଶରେ ମିଶି ଯିବେ ।' ଏ କଥା ଶୁଣି ଦଧୀଚିଙ୍କ ମନ ଟଳିଗଲା । ସେ ତ ଭାରି ଦୟାଳୁ—ମହାଯୋଗୀ, ଦେବତାମାନଙ୍କ ଏ କଷ୍ଟ ସହନ୍ତେ କିପରି ? ସାଙ୍ଗେ ସାଙ୍ଗେ ସେ କହି ପକାଇଲେ; "ମୁଁ ମଲେ ଯଦି ସ୍ୱର୍ଗ ମର୍ତ୍ତ୍ୟ ରହିବ—ଦେବତାମାନେ ବଞ୍ଚିବେ, ତେବେ ମୁଁ ଏହିକ୍ଷଣି ମରୁଛି ।" ଏହା କହି ସେ ପୁଣି ଯୋଗରେ ବସି ପ୍ରାଣ ବାୟୁ ଛାଡ଼ି ଦେଲେ । ଦେବତାମାନେ ତାଙ୍କ ହାଡ଼ ଆଣି ବଜ୍ର କଲେ । ସେହି ବଜ୍ରରେ ବୃତ୍ରାସୁର ମଲା । ତିନିପୁରର ଲୋକେ ଆନନ୍ଦରେ ରହିଲେ ।

ସବେଁ ଚଳିବେ କାଳ ବେଳେ
କଥା ରହିବ ମହୀ ତଳେ ।



## ବଳରାମ ଓ ପ୍ରଲମ୍ବାସୁର

ଦିନେ ଗୋପର ପିଲାମାନେ ବଳରାମ ଓ କୃଷ୍ଣଙ୍କ ସାଙ୍ଗରେ ଖେଳିବାକୁ ବଣକୁ ଗଲେ । ରାଜାରାଜା ଖେଳ ଖେଳିବା ପାଇଁ ସମସ୍ତେ ଠିକ୍ କଲେ । ଏକ ପକ୍ଷରେ କୃଷ୍ଣ ଅନ୍ୟ ପକ୍ଷରେ ବଳରାମ ରହିଲେ ।

ଖେଳ ଆରମ୍ଭ ହେଲା । ଏ ପଟରୁ ଜଣେ, ସେ ପଟରୁ ଜଣେ ଆସି ଯୁଦ୍ଧ କଲେ । ଯେ ହାରୁଥାଏ, ସେ ଅନ୍ୟ ଜଣକୁ କାନ୍ଧରେ ବସାଇ ଖଣ୍ଡେ ଦୂରରେ ଥିବା ଗୋଟିଏ ବରଗଛ ଯାଏଁ ବୋହି ନେଉଥାଏ । ଏହିପରି ଯୁଦ୍ଧର ଧୂମ୍ ଧାମ୍ ଚାଲିଲା । ଏ ପଟରୁ କେତେ ହାରିଗଲେ, ସେ ପଟରୁ ମଧ୍ୟ କେତେ ହାରିଗଲେ ।

ପ୍ରଲମ୍ବାସୁର ନାମରେ ଜଣେ ଅସୁର ବଣ ଭିତରେ ଲୁଚି ଏ ସବୁ ଦେଖୁଥିଲା । ସେ କଂସର ଦୂତ । କୃଷ୍ଣଙ୍କୁ ମାରିବା ପାଇଁ ଆସି

ଥିଲା । ସୁଯୋଗ ଦେଖି, ସେ ଗୋଟିଏ ଗଉଡ଼ ପିଲାର ରୂପ ଧରି ପିଲାମାନଙ୍କ ସଙ୍ଗେ ମିଶିଗଲା; ଖେଳରେ ଯୋଗ ଦେଲା । ତାର ଇଚ୍ଛା କୃଷ୍ଣଙ୍କ ସଙ୍ଗରେ ଯୁଦ୍ଧ କରିବ । ମାତ୍ର କୃଷ୍ଣଙ୍କ ଭାଗରେ ସୁଦାମା



ପଡ଼ିଲେ । ଯୁଦ୍ଧରେ ସୁଦାମା ହାରି ଯାଇ କୃଷ୍ଣଙ୍କୁ ପିଠିରେ ବସାଇ ବୋହି ନେଲେ । ଏଣେ ପ୍ରଲମ୍ବା ବଳରାମଙ୍କ ଭାଗରେ ପଡ଼ିଲା ।

ସେ ଭାବିଲା, "ମୁଁ ହାରିଯିବି । ରାମଙ୍କୁ କାନ୍ଧରେ ବସାଇ ଏକା ଥରକେ ବଣ ଭିତରକୁ ନେଇଯିବି । ସେଠାରେ ତାଙ୍କୁ ମୋଡ଼ା ମୋଡ଼ି କରି ଖାଇ ପକାଇବି—ତେବେ ଯାଇ କୃଷ୍ଣଙ୍କୁ ସେହିପରି କରିବି ।" ଏହା ଭାବିକରି, ସେ ଜାଣି ଜାଣି ହାରିଗଲା । ବଳରାମଙ୍କୁ କାନ୍ଧରେ ବସାଇ ଚାଲିଲା । ଗଛଟି ଯିମିତ ଡେଇଁଲା ସିମିତି ତାର ନିଜ ବିକଟାଳ ରୂପ ଧରିଲା । ଆକାଶରେ ଉଡ଼ି ପଳାଇବାକୁ ଠିକ୍ କଲା । ବଳରାମ ତାର ମନ କଥା ଜାଣି ପାରିଲେ । ସେ ରାଗରେ ଅସୁରର ମୁଣ୍ଡ ଉପରେ ବଜ୍ର ପରି ବିଧାଟାଏ ମାରିଦେଲେ । ତା ମୁଣ୍ଡ ଦୁଇ ଫାଳ ହୋଇ ଫାଟିଗଲା । ଅସୁର ଗଁ ଗଁ ରଡ଼ିଛାଡ଼ି ମରିଗଲା । ସମସ୍ତେ ଏହା ଦେଖି ବଳରାମଙ୍କୁ କୁଣ୍ଢାଇ ପକାଇଲେ—ବହୁତ ପ୍ରଶଂସା କଲେ ।

ମାୟା କପଟ ପରିହରି,
ଯେ ଦୟା, ଧରମ ଆଚରି,
ତା ସଙ୍ଗ ନଛାଡ଼ନ୍ତି ହରି
ରଖନ୍ତି ବିପଦୁଁ ଉଦ୍ଧାରି ।



## ନୃସିଂହ ଅବତାର

ଅସୁର ରାଜା ହିରଣ୍ୟର ପୁଅଙ୍କ ନାମ ପ୍ରହ୍ଲାଦ । ସେ ପିଲା ଦିନୁ ହରିଭକ୍ତ । ସେ ସବୁବେଳେ ହରି ନାମ ଗାନ ଓ କୀର୍ତ୍ତନ କରୁଥିଲେ । ହିରଣ୍ୟ ହରିଙ୍କୁ ଶତ୍ରୁ ବୋଲି ଭାବୁ ଥାଏ । ତେଣୁ ପ୍ରହ୍ଲାଦଙ୍କୁ ହରିନାମ ଛାଡ଼ିବାପାଇଁ ସେ ନାନା ଉପଦେଶ ଦେଲା ।

କିନ୍ତୁ ପ୍ରହ୍ଲାଦ ହରି ନାମ ଛାଡ଼ିଲେ ନାହିଁ । ଏହା ଦେଖି ହିରଣ୍ୟ ପ୍ରହ୍ଲାଦକୁ ନାନା ପ୍ରକାର ଦଣ୍ଡ ଦେଲା । ଘାତକମାନଙ୍କଦ୍ୱାରା ତାକୁ ହଣାଇଲା; ହାତୀ ପାଦ ତଳେ ପକାଇଲା; ଅଗ୍ନିକୁଣ୍ଡରେ ନିକ୍ଷେପ କଲା । ହାତ ଗୋଡ଼ ବାନ୍ଧି ସମୁଦ୍ରରେ ପିଙ୍ଗି ଦେଲା । ଶେଷରେ ବିଷ ମିଶା ଖାଦ୍ୟ ଖୁଆଇଲା—କେଉଁଥିରେ କିଛି ହେଲା ନାହିଁ । ସବୁ ବିପଦରୁ ହରି ପ୍ରହ୍ଲାଦକୁ ରକ୍ଷା କଲେ । ହରି ପ୍ରହ୍ଲାଦଙ୍କର ପ୍ରାଣ—ହରି ତାଙ୍କର ଜୀବନ ଥିଲେ । ହରିନାମ କୀର୍ତ୍ତନ ବିନା ସେ ଆଉ କିଛି ଜାଣୁ ନଥିଲେ ।

ପ୍ରହ୍ଲାଦ ସବୁ ଉତ୍ପୀଡ଼ନ ଭିତରୁ ଉଦ୍ଧାର ହେବା ଜାଣି ଅସୁରମାନେ ବଡ଼ ଭୟ କଲେ । ସେମାନେ ଜାଣିଲେ ନିଶ୍ଚୟ ହରି କେବଳ ପ୍ରହ୍ଲାଦଙ୍କୁ ରକ୍ଷା କରୁଛନ୍ତି । ତେଣୁ ସେମାନେ ମଧ୍ୟ ପ୍ରହ୍ଲାଦଙ୍କ ସହ ହରିନାମ କୀର୍ତ୍ତନ କଲେ । ଗାଁ ଗଣ୍ଡାରେ ହରିନାମ ପ୍ରଚାର କଲେ—ଶେଷରେ ଦେଖାଗଲା ଯେପରି ହରିନାମ ସବୁଠାରେ ପୂର୍ଣ୍ଣ ରହିଲା ।

ଦିନ ରାତି ଏହି ହରିନାମ ଶୁଣି ହିରଣ୍ୟ କ୍ରୋଧରେ ବାୟା ହୋଇଗଲା । ଆଉ ତାହାକୁ ନିଦ ଲାଗିଲା ନାହିଁ । ସେ ଭୃତ୍ୟ ପଠାଇ ପ୍ରହ୍ଲାଦକୁ ଡକାଇ ଆଣିଲା । ପ୍ରହ୍ଲାଦ ହାତ ଯୋଡ଼ି ବାପାଙ୍କ ଗୋଡ଼ତଳେ ପଡ଼ିଗଲେ, ପୁଣି ଉଠି ହାତ ଯୋଡ଼ି ଠିଆ ହେଲେ । ଦୈତ୍ୟରାଜ କ୍ରୋଧରେ ପଚାରିଲା "ପିତୃ ଆଦେଶ ଲଙ୍ଘନ କରିବା କି ତୋହର ଧର୍ମ ? ଏହା କି ତୋ ହରିର ଶିକ୍ଷା ?" ଏହା ଶୁଣି ପ୍ରହ୍ଲାଦ ଭକ୍ତି ଓ ନମ୍ର ଭାବରେ କହିଲେ, "ପିତା ତୁମର ଆଦେଶ ଅମାନ୍ୟ କରିବା ମୋହର ଧର୍ମ ନୁହେ; ଦୟାଳୁ ହରିଙ୍କ ଶିକ୍ଷା ତାହା ନୁହେ । ସେ ପିତାଙ୍କ ପିତା, ମାତାଙ୍କ ମାତା । ଆସ ଆମ୍ଭମାନଙ୍କ ସହିତ

ଦୟାମୟ ହରିଙ୍କୁ ଡାକିବ—ତୁମର ପାପ ସବୁ କ୍ଷୟ ହେବ—ସ୍ୱର୍ଗରେ ଯାଇଁ ବସିବ ।”

ଏହା ଶୁଣି ରାଜା ଅସୁର କ୍ରୋଧରେ ଜଳି ଉଠିଲା । ସେ ପ୍ରହ୍ଲାଦଙ୍କର ଚୁଟି ଧରି ଉଠାଇଲା । ଗଣ୍ଡା ଟେକି ପଚାରିଲା, “ତୋର ହରି କେଉଁଠାରେ ଅଛି ଦେଖାଅ—ନୋହିଲେ ତୋର ପ୍ରାଣ ନାଶ କରିବି ।” ପ୍ରହ୍ଲାଦ ନିର୍ଭୟରେ ଉତ୍ତର କଲେ, “ମୋର ହରି ସବୁଠାରେ ଅଛନ୍ତି ।” ରାକ୍ଷସ ପୁନର୍ବାର ପଚାରିଲା, “ତୋର ହରି କିଣ ଏହି ଖମ୍ବରେ ଅଛି ?” ପ୍ରହ୍ଲାଦ ନମ୍ର ଭାବରେ କହିଲେ, “ହଁ, ସେ ଏଥିମଧ୍ୟରେ ଲୁଚି ଅଛନ୍ତି ।” ଏହା ଶୁଣି ରାଜା ପ୍ରହ୍ଲାଦଙ୍କର ଚୁଟି ଛାଡିଦେଲା, ଧାଇଁଯାଇ କ୍ରୋଧରେ ସେହି ଖମ୍ବକୁ ତୋଇଠାଟିଏ ମାରିଲା । ଭକ୍ତବତ୍ସଳ ହରି ପ୍ରହ୍ଲାଦଙ୍କର କଷ୍ଟ ଦେଖି ଆଉ ସମ୍ଭାଳି ପାରିଲେ ନାହିଁ ।

“ଭକ୍ତର ବଚନ ଆଜ ରକ୍ଷଣେ କିଶୋର
ଧରିଲେ ସ୍ତମ୍ଭକୁ ଆସି ଉଗ୍ର ଅବତାର ।”

ରାକ୍ଷସର ପଦାଘାତରେ ଖମ୍ବ ଫାଟିଗଲା । ସେଥି ମଧ୍ୟରୁ ନର ଦେହ ଓ ସିଂହମୁଖ ଧରି ହରି ଗର୍ଜନ କରି ବାହାରି ପଡ଼ିଲେ । ହିରଣ୍ୟକୁ ଭିଡ଼ି ଧରି ଜଙ୍ଘ ଉପରେ ପକାଇ, ଅନ୍ତ ମୁହଁ ବିଦାରି ତାହାର ପ୍ରାଣ ନାଶ କଲେ ।

**ହରି ରଖେ ମାରେ କିଏ ?**
**ହରି ମାରେ ରଖେ କିଏ ?**



# ଶ୍ରୀକୃଷ୍ଣ ଓ କୁଜା

କୃଷ୍ଣ ବଳରାମ ଦୁହେଁ ଅକ୍ରୂର ସାଥିରେ ମଥୁରା ଗଲେ । ସମସ୍ତେ ତାଙ୍କୁ ଦେଖିବା ପାଇଁ ଦୌଡ଼ି ଆସିଲେ । ସେତେବେଳେ ଜଣେ ଗାଧୋଉଥିଲା; ଓଦା ଲୁଗାରେ ସରସରିଆ ହୋଇ ଦେଖିବା ପାଇଁ ଧାଇଁ ଆସିଲା । କିଏ ଭାତ ରାନ୍ଧୁଥିଲା, ଉନା ଛାଡ଼ି ଚାଲି ଆସିଲା— ତେଣେ ଭାତ ତିଅଣ ସବୁ ପୋଡ଼ି ଜଳି ଚୂଲିକି ଗଲା । କିଏ ବସି ମୁଣ୍ଡ କୁଣ୍ଡାଉ ଥିଲା, ମୁଣ୍ଡରେ ପାନିଅଠା ଲଗିଛି, ବାଳ ମୁକୁଳା କରି ଧାଇଁ ଆସିଲା । ଏହିପରି ଯେ ଯାହା କରୁଥିଲେ ତାହା ଛାଡ଼ି ଧାଇଁ ଆସିଲେ । ମଥୁରା ଦାଣ୍ଡ ହୁଲହୁଲିରେ ଉଚ୍ଛୁଳି ପଡ଼ିଲା ।

ବାଟରେ ଯାଉଁ ଯାଉଁ ବଳରାମ ଓ କୃଷ୍ଣ ଗୋଟିଏ କୁଜୀ ମାଇକିନିଆକୁ ଦେଖିଲେ । ସେ କୁଜୀଟି ନିତ ନିତ କଂସ ପାଖକୁ ଚୂଆ, ଚନ୍ଦନ, ଫୁଲମାଳ ଧରି ଯାଉଥାଏ । କଂସକୁ ସେସବୁ ଲଗାଇ ଦେଇ ଘରକୁ ଲେଉଟି ଆସେ । ସେ ଦିନ ମଧ୍ୟ ସେପରି ଚୂଆ, ଚନ୍ଦନ, ଫୁଲ ନେଇ ଯାଉଥିଲା । କୃଷ୍ଣଙ୍କୁ ଦେଖି ଅତି ଆନନ୍ଦରେ ତାଙ୍କ ପାଖକୁ ଧାଇଁ ଆସିଲା । ମୁହଁ ଟେକି ଦୁହିଁଙ୍କ ଆଡ଼େ ଟୋଳେଇ ଟୋଳେଇ ଚାହିଁ ରହିଲା । ସେମାନଙ୍କର ସୁନ୍ଦର ଛଟା ଦେଖି ଆଁ କରି ଚାହିଁ ରହିଲା । କୃଷ୍ଣ ତାଙ୍କୁ ପଚାରିଲେ— "ହଇଲୋ ବୁଢ଼ୀ ! ତୁ କିଏ ? କୁଆଡ଼େ ଯାଉଛୁ ? ତୋ ପିଠିରେ ଏ କଣ ?" ଏହାଶୁଣି କୁଜୀର ଆନନ୍ଦର ଅନ୍ତ ସୀମା ରହିଲା ନାହିଁ । ସେ ହସି ହସି କହିଲା, "ବାବୁ, ମୋର ଘର ଏଇଠି, ମୋର ଆଉ କେହି ନାହାନ୍ତି, ମୁଁ ଜନମରୁ କୁଜୀ । ସେଥିପାଇଁ ମୋତେ କେହି ବାହା କଲେ ନାହିଁ, କ'ଣ କରିବି ? ପେଟ ପୃଖଣ୍ଡିବ ତ ପୋଷିବା

କଥା—ଏଣୁ ନନ୍ଦ ବଂଶଧରଙ୍କୁ ପୂଜା, ଚନ୍ଦନ ଦେଇ ଅଛେ । ସେ ଯାହା ଦିଅନ୍ତି ତହିଁରେ ଚଳେ ।”

କୃଷ୍ଣ ଟିକିଏ ହସି ତାର ଦୁଇ ଗୋଡ଼ ନିଜ ଗୋଡ଼ରେ ମାଡ଼ି ବସିଲେ । ଦୁଇ ହାତ ଧରି ଅଳ୍ପ ଟେକି ଦେଲେ । ଏ କଣ ! କହୁଁ କହୁଁ କୁବ୍ଜୀର କୁବ୍ଜ କୁଆଡ଼େ ଉଭେଇ ଗଲା । ସେ ଗୋଟିଏ ସୁନ୍ଦରୀ ସ୍ତ୍ରୀ ହୋଇ ଠିଆ ହେଲା । ତା’ ଆନନ୍ଦର ଆଉ ସୀମା ରହିଲା ନାହିଁ । କୃଷ୍ଣଙ୍କ ଗୋଡ଼ ତଳେ ଲମ୍ବା ହୋଇ ପଡ଼ିଗଲା । କେତେକ ଦିନ ପରେ ବିଭା ହୋଇ ସୁଖରେ ରହିଲା ।

‘ତୁ ନାଥ ବାଞ୍ଛା କଳ୍ପତରୁ,
ଭକ୍ତର ବାଞ୍ଛା ପୂର୍ଣ୍ଣକରୁ ।”



# ଏକଲବ୍ୟ

ଅନେକ ଦିନ ତଳେ ଏକଲବ୍ୟ ବୋଲି ଗୋଟିଏ ଶବର ପିଲା ଥିଲା । ସେ ଅସୁନ୍ଦର ହେଲେ ମଧ୍ୟ ଭାରି ଗୁଣବାନ୍ । ଶବର ଜାତିର ଲୋକେ ଭଲ ପାରିଧି କରି ଜାଣନ୍ତି । ଏକଲବ୍ୟଙ୍କର ଇଚ୍ଛା ସେ ଭଲ କରି ଯୁଦ୍ଧବିଦ୍ୟା ଶିଖି ଜଗତରେ ଜଣେ ବଡ଼ ଯୋଦ୍ଧା ହେବେ ।

ଏକଲବ୍ୟ ଦିନେ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇ ନିଜ ମନ କଥା ଜଣାଇଲେ । ପିଲାଟିକୁ ଦେଖି ଦ୍ରୋଣାଚାର୍ଯ୍ୟଙ୍କ ମନରେ ଦୟା ହେଲା । ସେ କହିଲେ, “ବାବା, ତୁମ କଥାରେ ମୁଁ ଭାରି ସନ୍ତୁଷ୍ଟ ହେଲି, ଭଗବାନ ଅବଶ୍ୟ ଏ କାର୍ଯ୍ୟରେ ତୁମର ସହାୟ ହେବେ । ତୁମେ ଅବଶ୍ୟ ଯୁଦ୍ଧବିଦ୍ୟା ଶିଖିବ, ତେବେ ଦୁଃଖର

କଥା, ରଜାପିଲାଙ୍କ ସଙ୍ଗେ ତୁମକୁ ତାହା ଶିଖାଇ ପାରିବି ନାହିଁ । ଏହା କଲେ ଲୋକେ କଅଣ କହିବେ ?

ଏକଲବ୍ୟ ସବୁ କଥା ବୁଝିଯାଇଲେ । ଦୀର୍ଘ ନିଶ୍ୱାସଟିଏ ଛାଡ଼ି ଦେଇ ଦୁଇ ଆଖିରୁ ଦୁଇଧାର ଲୁହ ଗଡ଼ାଇ ଦେଲେ । ଭାବିଲେ, "ମୁଁ ଶବର ପିଲା ହୋଇଥିବାରୁ ସିନା ଦ୍ରୋଣାଚାର୍ଯ୍ୟ ମୋତେ ରଜାପିଲାଙ୍କ ସହିତ ଶିଖାଇବାକୁ ନାହିଁ କଲେ । ଅଚ୍ଛା ମୁଁ ଗୁରୁଙ୍କ ପ୍ରସାଦରେ ଈଶ୍ୱରଙ୍କ କୃପାରେ ନିଶ୍ଚୟ ଧନୁର୍ବିଦ୍ୟା ଶିଖି ସେମାନଙ୍କଠୁଁ ବଳିଯିବି ।" ସେ ଦ୍ରୋଣାଚାର୍ଯ୍ୟଙ୍କୁ ମନେ ମନେ ଗୁରୁରୂପେ ବରଣ କରି ବଣକୁ ଫେରିଲେ ।

କଥରେ ଅଛି 'ଯନ୍ନ କଲେ ରତ୍ନ ମିଳେ'—ଏ କଥାରେ ଏକଲବ୍ୟଙ୍କର ଦୃଢ଼ ବିଶ୍ୱାସ । ସେ ବଣର ଗୋଟିଏ ନିର୍ଜନ ସ୍ଥାନରେ ରହିଲେ । ମାଟିରେ ଦ୍ରୋଣାଚାର୍ଯ୍ୟଙ୍କର ଗୋଟିଏ ମୂର୍ତ୍ତି ତିଆରି କଲେ । ସେହି ମୂର୍ତ୍ତି ପାଦତଳେ ସେ ଫୁଲ ଫଳ ଦେଇ କହନ୍ତି, "ଗୁରୁଦେବ ! ମୁଁ ବଡ଼ ଗରିବ, ଅଛୁଆଁ ଶବର ପିଲା, କଣ ଦେଇ ପାରିବି ? ଭକ୍ତିରେ ଏ ଫୁଲ ଫଳ ଦେଉଛି—ଗ୍ରହଣ କରନ୍ତୁ ।" ଏହା କହି ସାରି ସେ ଦ୍ରୋଣଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି । ଧନୁ ଧରି ଲକ୍ଷ୍ୟ ଭେଦ ଶିଖନ୍ତି । 'ଯାର ମନ ଯେଉଁ ଠାର ହିଦ୍ଧି ତେଉଁ'—ସତକୁ ସତ ଅଳ୍ପକାଳ ମଧ୍ୟରେ ଏକଲବ୍ୟ ଧନୁର୍ବିଦ୍ୟାରେ ଧୁରନ୍ଧର ହୋଇ ଉଠିଲେ ।

ଦିନେ କୁରୁ ଓ ପାଣ୍ଡୁଙ୍କ ପୁଅମାନେ ବଣରେ ଶିକାର କରିବାକୁ ବାହାରିଲେ । ତାଙ୍କ ସଙ୍ଗେ ଦ୍ରୋଣାଚାର୍ଯ୍ୟ ମଧ୍ୟ ଥିଲେ । ଶିକାର କରୁ କରୁ ଅର୍ଜୁନଙ୍କ କୁକୁରଟି ବେଶି ଆଗକୁ ଯାଇ ଏକଲବ୍ୟଙ୍କ ଆଶ୍ରମ ନିକଟରେ ଦେଖି 'ଭୋ ଭୋ' ଭୁକିଲା ।

ଏକଲବ୍ୟ ଏ ଧ୍ୱନିରେ ଚକିତ ହୋଇ କୁକୁରକୁ ଶର ମାଇଲେ । ସେ ଏପରି କୌଶଳରେ ଲକ୍ଷ୍ୟ କଲେ ଯେ, ଶରଟି ଯାଇ କୁକୁରର ପାଟି ସିଲାଇ କରିଦେଲା । କୁକୁର ଆଉ ଭୁକି ପାରିଲା ନାହିଁ । କୁକୁରଟି ସେହି ଅବସ୍ଥାରେ ଯାଇ ଅର୍ଜୁନଙ୍କ ପାଖରେ କାନ୍ଦ କାନ୍ଦ ହୋଇ ଛିଡ଼ା ହେଲା । ଏହା ଦେଖି ସମସ୍ତେ ଅବାକ୍ । ଅର୍ଜୁନ ଗର୍ବ କରୁଥିଲେ, ସେ ନିଜେ ବଡ଼ ଯୋଦ୍ଧା ବୋଲି—ସେବେ ତାଙ୍କ ଗର୍ବ ଖର୍ବ ହେଲା । ଦ୍ରୋଣାଚାର୍ଯ୍ୟ ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । ସମସ୍ତେ କୁକୁର ସାଙ୍ଗରେ ଏକଲବ୍ୟଙ୍କ ଆଶ୍ରମକୁ ଗଲେ ।

ସେତେବେଳେ ଏକଲବ୍ୟ ଫୁଲଫଳ ଦେଇ ଦ୍ରୋଣଙ୍କ ମୂର୍ତ୍ତିକୁ ପୂଜା କରୁଥିଲେ । ଚକ୍ଷୁ ବନ୍ଦକରି ଭକ୍ତ ଗଦ୍‌ଗଦ ସ୍ୱରରେ କହୁଥିଲେ, "ଗୁରୁଦେବ ! ଆପଣଙ୍କ ଅନୁଗ୍ରହରୁ ମୁଁ ଅନେକ ଧନୁର୍ବିଦ୍ୟା ଶିଖିଲଣି । ଆପଣଙ୍କ ହାତରେ ମୋ ପରୀକ୍ଷାଟି ମାତ୍ର ବାକୀ ରହିଲା । କହ ଗୁରୁଦେବ ! କେବେ ମୋର ପରୀକ୍ଷା ହେବ ? ଆପଣଙ୍କୁ ଦକ୍ଷିଣା ଦେଇ କେବେ ବା ସନ୍ତୁଷ୍ଟ କରିବି ?" କହୁ କହୁସାରି ସେ ଅଖି ଫିଟାଇ ଦେଖିଲେ, ତାଙ୍କ ପଛ ଭାଗରେ ସାକ୍ଷାତ୍ ଦ୍ରୋଣ, ଆଉ କୁରୁ ପାଣ୍ଡବ ଶିଷ୍ୟଗଣ । ଅତଏବ ଆନନ୍ଦରେ ତାଙ୍କ ପାଦ ଆଉ ତଳେ ପଡ଼ିଲା ନାହିଁ । ବିନୀତ ସ୍ୱରରେ, 'ଗୁରୁଦେବ, ଗୁରୁଦେବ' କହି ଦ୍ରୋଣାଚାର୍ଯ୍ୟଙ୍କ ଚରଣ ତଳେ ପଡ଼ିଗଲେ । ପରେ ଉଠି ଗୁରୁଙ୍କ ପାଦ ଧୋଇଦେଇ ବସିବା ପାଇଁ ଆସନ ଦେଲେ । କୁରୁ ପାଣ୍ଡବମାନଙ୍କୁ ମଧ୍ୟ ବସିବା ପାଇଁ ଅନୁରୋଧ କଲେ । ଅର୍ଜୁନଙ୍କ ହୃଦୟ ଈର୍ଷା ଓ କ୍ରୋଧରେ ଜଳିଗଲା । ସେ ଭାବିଲେ, "ଗୁରୁ କହୁଥାନ୍ତି ଯେ, ମୁଁ ତାଙ୍କର ବଡ଼ ବିଶ୍ୱସ୍ତ ଶିଷ୍ୟ—ମୋତେ ସମସ୍ତଙ୍କଠାରୁ ଅଧିକ ସୁଖ ଦାନ୍ତି ଏବଂ ସମସ୍ତଙ୍କ

ଅପେକ୍ଷା ମୋତେ ଅଧିକ ଅସ୍ତ୍ର ଶସ୍ତ୍ର ବିଦ୍ୟା ଶିଖାନ୍ତି । କିନ୍ତୁ ଦେଖୁଛି ଗୁରୁ କପଟ କରି ଏହି ପିଲାଟିକୁ ମୋଠୁଁ ବଳି ଭଲ ବିଦ୍ୟା ଶିଖାଇ ସାରିଛନ୍ତି । ଦେଖାଯାଉ, ଗୁରୁଙ୍କ କପଟ ଅଙ୍କ ପଦାରେ ପଡ଼ିଯିବ ।"

ଏତିକିବେଳେ ଦ୍ରୋଣ ଏ ପିଲାଟିକୁ ଏକଲବ୍ୟ ବୋଲି ଜାଣି ପାରିଲେ । ତାଙ୍କର ଗୁରୁଭକ୍ତି ଦେଖି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ପଚାରିଲେ, "ଏକଲବ୍ୟ ! ତୁମେ ଅଳ୍ପ ଦିନ ମଧ୍ୟରେ ଏତେ ଧନୁର୍ବିଦ୍ୟା ଶିଖିଲ କିପରି ? ତୁମର ଗୁରୁ କିଏ ?" ଏକଲବ୍ୟ ହାତ ଯୋଡ଼ି ନମ୍ର ସ୍ୱରରେ କହିଲେ, 'ପ୍ରଭୋ ! ଆପଣ ମତେ ରାଜପୁତ୍ରଙ୍କ ସହ ଶିଖାଇବାକୁ ନାହିଁ କରିବା ଦିନୁ ମୁଁ ଭକ୍ତି ଭାବରେ ଆପଣଙ୍କ ମୂର୍ତ୍ତି ଏଠାରେ ସ୍ଥାପନ କରି ସବୁ ଧନୁର୍ବିଦ୍ୟା ଶିଖିଲି ।" ଏହା ଶୁଣି ସମସ୍ତେ ଅବାକ୍ । ଅର୍ଜୁନଙ୍କ କ୍ରୋଧ କେଉଁଆଡ଼େ ଉଭେଇ ଗଲା । ସେ ଲଜ୍ଜାରେ ମୁଣ୍ଡ ପୋତି ଦେଲେ । ଦ୍ରୋଣ ଭାବିଲେ, ପିଲାଟି ଅଳ୍ପେ ଅଳ୍ପେ ଶିଖି ଏବେ ଏପରି ବୀର ହେଲାଣି ଯେ, କୁରୁ ପାଣ୍ଡବମାନେ ଏହାଙ୍କ ଆଗରେ କିଛି ନୁହନ୍ତି; ଏ ବଡ଼ ହେଲେ କଣ ନକରିବ ? ସେ ମନ କଥା ମନରେ ରଖି ଏକଲବ୍ୟଙ୍କୁ କହିଲେ, "ବାବା, ତୁମର ଗୁରୁଭକ୍ତି ଓ ଧନୁର୍ବିଦ୍ୟାରେ ମୁଁ ପରମ ସନ୍ତୁଷ୍ଟ ହେଲି । ମୋତେ ଯେତେବେଳେ ମନେ ମନେ ଗୁରୁ କରି ନେଇଛ—ଏବେ ତୁମକୁ ଦକ୍ଷିଣା ଦେବାକୁ ହେବ ।" ଏହା ଶୁଣି ଏକଲବ୍ୟ ମହା ଆନନ୍ଦରେ କହିଲେ, "ଗୁରୁଦେବ ! ଆଜ୍ଞା ହେଲେ ଏ ଅଧମ ଗୁରୁ ଦକ୍ଷିଣା ଦେବାକୁ ପଛେଇବ ନାହିଁ । ଆପଣ ଯାହା ଲୋଡ଼ିବେ ନିଶ୍ଚୟ ଦେବି । ଲୋଡ଼ିଲେ ଜୀବନ ଦେବା ପାଇଁ ମଧ୍ୟ ମୁଁ ପ୍ରସ୍ତୁତ ।"

ଦ୍ରୋଣାଚାର୍ଯ୍ୟ ଟିକିଏ ହସି ଦେଇ କହିଲେ, "ତୁମ ଦକ୍ଷିଣ ହାତର ବୁଢ଼ାଅଙ୍ଗୁଠିଟି କାଟି ଦେଲେ ମୁଁ ସନ୍ତୁଷ୍ଟ ହେବି।" ଏହା



ଶୁଣିବା କ୍ଷଣି ଏକଲବ୍ୟ ମହା ସନ୍ତୋଷରେ ନିଜର ଦକ୍ଷିଣ ହାତର ବୁଢ଼ା ଅଙ୍ଗୁଠିଟି କାଟି ଗୁରୁଙ୍କ ପାଦ ତଳେ ଥୋଇ ଦେଲେ ।

ଏକଲବ୍ୟଙ୍କ ଗୁରୁଭକ୍ତି ଦେଖି ସମସ୍ତେ ଚକିତ ହୋଇଗଲେ । ସମସ୍ତଙ୍କଠାରୁ ବଳି ଅର୍ଜୁନ ବିସ୍ମିତ ହେଲେ । ସେ ନିଜର ଗୁରୁଭକ୍ତିକୁ ତୁଚ୍ଛ ମନେ କଲେ । ସାମାନ୍ୟ ଶବର ବାଳକଠାରୁ ଏହି ମହାଶିକ୍ଷା ପାଇ ସେ ଲଜ୍ଜିତ ହୋଇ ପଡ଼ିଲେ । ସ୍ୱର୍ଗରୁ ପୁଷ୍ପବୃଷ୍ଟି ହେଲା । ଦେବତାମାନେ ସାଧୁ ସାଧୁ କହିଲେ । ଦ୍ରୋଣାଚାର୍ଯ୍ୟ ଅତ୍ୟନ୍ତ ପ୍ରୀତ ହୋଇ ଏକଲବ୍ୟଙ୍କୁ କୁଣ୍ଢେଇ ପକାଇଲେ । ସେ ମନ୍ତ୍ର ବୋଲି ଏକଲବ୍ୟଙ୍କ ଅଙ୍ଗୁଠିଟି ଫୁଙ୍କି ଦେବାରୁ ରକ୍ତଧାର, ବେଦନା ସବୁ ହଠାତ୍ ବନ୍ଦ ହୋଇଗଲା; ମାତ୍ର ଅଙ୍ଗୁଠି ପର କଅଁଳିଲା ନାହିଁ । ଦ୍ରୋଣ ଓ ରାଜକୁମାରଗଣ ସେଠାରୁ ଫେରିଲେ ।

**ମନ ଥିଲେ ଧନ ମିଳେ,**
**ବୁଦ୍ଧି ଥିଲେ ନିଧି ମିଳେ ।**



# ଧର୍ମ ଧାର୍ମିକକୁ ରକ୍ଷା କରେ

ଆମ ଦେଶରେ ପୂର୍ବକାଳରେ ଜଣେ ବଡ଼ ରାଜା ଥିଲେ । ସେ ଥରେ ଗଙ୍ଗାସ୍ନାନ ସାରି ଜଣେ ନୈଷ୍ଠିକ ବ୍ରାହ୍ମଣଙ୍କୁ କହିଲେ, "ତୁମର କଣ ଲୋଡ଼ା କହ, ମୁଁ ନିଶ୍ଚୟ ଦେବି ।" ଏହା ଶୁଣି ବ୍ରାହ୍ମଣ କହିଲେ, "ମହାରାଜ ! ମୋର ଇଚ୍ଛା, ପ୍ରତିଦିନ ନିର୍ଜନ ସ୍ଥାନରେ ଆପଣଙ୍କୁ ଗୋଟିଏ କଥା କହିବି । ଏହା କରି ପାରିଲେ ମୁଁ ସୁଖୀ ହେବି ।" ରାଜା ଏଥିରେ ରାଜି ହେଲେ । ବ୍ରାହ୍ମଣ ଯାଇ ପ୍ରତିଦିନ ରାଜାଙ୍କ କାନରେ କହନ୍ତି, "ଧର୍ମ ଧାର୍ମିକକୁ ରକ୍ଷା କରେ ।"

ଏହା ଦେଖି ରାଜସଭାର ଲୋକେ ବ୍ରାହ୍ମଣଙ୍କୁ ଭୟ କଲେ । ଭାବିଲେ, ଏ ନିଶ୍ଚୟ ଆମ୍ଭମାନଙ୍କ ବିରୁଦ୍ଧରେ ରାଜାଙ୍କୁ ଲାଗ କହୁଅଛି ।

ବ୍ରାହ୍ମଣ ପଢ଼ ମନ୍ତ୍ରୀଙ୍କର ଖୁବ ହେଲା, କାରଣ ମନ୍ତ୍ରୀଙ୍କ ଛଡ଼ା ଅନ୍ୟ କୌଣସି ଲୋକ ପ୍ରକୃତ କୌଣସି ବିଷୟରେ ଗୁପ୍ତ ମନ୍ତ୍ରଣା କରିବା ରାଜାଙ୍କର ଉଚିତ ନୁହେ । ସେ ଭାବିଲେ ଏ ବ୍ରାହ୍ମଣ ଯୋଗେ ରାଜ୍ୟର ସର୍ବନାଶ ଘଟି ପାରେ, ଅଥ ତାଙ୍କ ମନ୍ତ୍ରୀ ପଦରେ ପ୍ରଶ୍ନ ଅସି ପାରେ । ଏଣୁ ସେ ବ୍ରାହ୍ମଣଙ୍କୁ ନଗରରୁ ତଡ଼ି ଦେବାର ଉପାୟ ପାଞ୍ଚିଲେ ।

ମନ୍ତ୍ରୀ ଗୋଟିଏ ଉପାୟ ସ୍ଥିର କରି ଧନେ ବ୍ରାହ୍ମଣ ଘରକୁ ଗଲେ । ବ୍ରାହ୍ମଣ ସେତେବେଳେ ଘରର ବେଦୀରେ ବସିଛନ୍ତି । ଶୁକ୍ଳ ପାଟଟିଏ ପିନ୍ଧିଛନ୍ତି, ଗାମୁଛାଟିଏ କାନ୍ଧରେ ପଡ଼ିଛି—ନିର୍ମଳ ପଇତାଟିଏ କାନ୍ଧରୁ ତଳପେଟଯାଏଁ ଲମ୍ବିଛି । କପାଳ, ଗଳା, ବାହୁ ଚନ୍ଦନ ବୋଳା ହୋଇଅଛି । ଅଖି ବୁଜି ମାଳା ଧରି ଶୁଦ୍ଧ ଚିତ୍ତରେ ଜପ କରୁଛନ୍ତି । ଠିକ୍ ଜପ ଶେଷ ହେବାବେଳକୁ ମନ୍ତ୍ରୀ ଆସି ଦ୍ୱାରରେ ଠିଆ ହୋଇଗଲେ ।

ବ୍ରାହ୍ମଣ ମନ୍ତ୍ରୀଙ୍କୁ ଉପଯୁକ୍ତ ଆସନ ଦେଲେ ଏବଂ ତାଙ୍କ ଅସିବାର କାରଣ ପଚାରିଲେ । ମନ୍ତ୍ରୀ କହିଲେ, "ତୁମେ ଯେତେ ରାଜାଙ୍କ କାନରେ ଗୁପ୍ତ କଥା କହିବାବେଳେ ତୁମ ତୁଣ୍ଡରୁ ଦୁର୍ଗନ୍ଧ ବାହାରୁଛି, ସମସ୍ତ ସମୟରେ ଛେପ ମଧ୍ୟ ପଡ଼ୁଛି । ଏଣୁ ରାଜା ଭାରି ବିରକ୍ତ ହୋଇଛନ୍ତି । ତୁମେ କାନରେ କହିବାବେଳେ ଏଣିକି ସୁବାସ ଦ୍ରବ୍ୟ ତୁଣ୍ଡରେ ରଖିବ, ମୁହଁ ପାଖରେ ଲୁଗା ଦେବ । ତୁମର ମଙ୍ଗଳ ପାଇଁ ଏହା କହୁଛି । ଅନ୍ୟ କିଛି ଭାବିବ ନାହିଁ ।" ବ୍ରାହ୍ମଣ ଭାରି ସନ୍ତୁଷ୍ଟ ହୋଇ ମନ୍ତ୍ରୀଙ୍କି ଆଶୀର୍ବାଦ କଲେ । ପରେ ମନ୍ତ୍ରୀ ନିଜ ଗୃହକୁ ବାହୁଡ଼ିଲେ ।

ପରଦିନ ମନ୍ତ୍ରୀ ରାଜାଙ୍କ ସମ୍ମୁଖରେ ଜଣାଇଲେ, ଶୁଣି ପାରୁଛି, ଆପଣଙ୍କ କାନରୁ ଦୁର୍ଗନ୍ଧ ବାହାରୁଛି ବୋଲି ବ୍ରାହ୍ମଣ ବିରକ୍ତ ହୋଇ ତୁଣ୍ଡରେ ସୁବାସ ଦ୍ରବ୍ୟ ରଖି ମୁହଁ ପାଖରେ ଲୁଗା ଧରି କଥା କହୁଛି । ଏ କଣ ସତ୍ୟ ?"

ଏହା ଶୁଣି ରାଜାଙ୍କ ମନରେ କଷ୍ଟ ହେଲା । ସେ ରାଗି ଯାଇ କହି ପକାଇଲେ—"ଭାତ ଦେଲି କୁକୁରକୁ, କୁକୁର ଉଠିଲା ଉପରକୁ—ସାମାନ୍ୟ ଜଣେ ବ୍ରାହ୍ମଣର ଏତେ ଗର୍ବ । ଅଚ୍ଛା କାଲି ତାର କଥା ବୁଝିବି ।" ପରେ ରାଜ୍ୟର ଅନ୍ୟାନ୍ୟ କଥା ପଡ଼ିଲା । ମନ୍ତ୍ରୀ ବିଦାୟ ନେଇ ଘରକୁ ଫେରିଲେ ।

ପରଦିନ ସକାଳେ ବ୍ରାହ୍ମଣ ଜପତପ ସାରି ମନେ ମନେ, "ଧର୍ମ ଧାର୍ମିକକୁ ରକ୍ଷା କରେ" ଏ କଥା କହି କହି ରାଜାଙ୍କ ନଅର ଆଡ଼କୁ ଗଲେ । ଏଣେ ରାଜା ଭିତୀୟ ଦ୍ୱାରର ପ୍ରହରୀକୁ କହିଥିଲେ "ଯେଉଁ ଲୋକ ହାତରେ ଗୋଟିଏ ଟଭା ଫଳ ଦେଖିବୁ ତା ଗଣ୍ଡିରୁ ମୁଣ୍ଡ ଭିନ୍ନ କରିଦେବୁ ।"

ବ୍ରାହ୍ମଣ ନଅର ଭିତରକୁ ଯାଇ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ରାଜାଙ୍କୁ ଆଶୀର୍ବାଦ କରି ତାଙ୍କ କାନରେ ପୂର୍ବପରି କହିଦେଲେ, 'ଧର୍ମ ଧାର୍ମିକକୁ ରକ୍ଷା କରେ ।' ରାଜା କପଟରେ ଟିକିଏ ହସି ଦେଇ ତାଙ୍କୁ କହିଲେ, "ଆପଣ ଏ ଟଭା ଫଳଟି ନିଅନ୍ତୁ ।" ବ୍ରାହ୍ମଣ ଆନନ୍ଦରେ ତାହା ଗ୍ରହଣ କରି ଫେରିବାବେଳେ ବାଟରେ ମନ୍ତ୍ରୀଙ୍କୁ ଦେଖିଲେ । ମନ୍ତ୍ରୀ ତାଙ୍କ ସହିତ କଥାବାର୍ତ୍ତା ହେବା ପରେ ସେହି ଟଭା ଫଳଟି ମାଗିଲେ । ବ୍ରାହ୍ମଣ ତାହା ସନ୍ତୋଷରେ ଦେଇ ଘରକୁ ଫେରିଲେ ।

ଏଣେ ମନ୍ତ୍ରୀ ନିଜ କାମ ସାର ଝିଅଟି ଧରି ଜୁଆସରୁ ଫେରିଲେ । ମନ୍ତ୍ରୀଙ୍କୁ ଦେଖିବାକ୍ଷଣି ଜୁଆଡ଼ି ଦ୍ୱାରୀ ଖଣ୍ଡାରେ ତାଙ୍କ



ମୁଣ୍ଡ ଛିଣ୍ଡାଇ ପକାଇ ଦେଲା ଓ ମୁଣ୍ଡଟି ଧରି ରାଜାଙ୍କ ସମ୍ମୁଖକୁ ଗଲା । ରାଜା ଏହା ଦେଖି ଅବାକ୍ ହେଲେ । ଏହାର କାରଣ ପଚାରିଲେ ।

ଦ୍ୱାରୀ ଥରି ଥରି କହିଲା, "ଗୁରୁମୁଙ୍କର ଆଦେଶ ଅନୁସାରେ ମୁଁ ଛୋରା ଧରି ଯିବା ଲୋକକୁ ହାଣିଅଛି ।" ରାଜା ସେହିକ୍ଷଣି ବ୍ରାହ୍ମଣଙ୍କୁ ଡକାଇଲେ । ବ୍ରାହ୍ମଣ ଆସି ଦେଖିଲେ ସ୍ୱୀପଣ କାଣ୍ଡ । ରାଜା ବ୍ରାହ୍ମଣଙ୍କୁ ପଚାରିଲେ, "ମୋର କାନରୁ ଦୁର୍ଗନ୍ଧ ବାହାରୁଛି ବୋଲି ଆପଣ ମୁହଁରେ ଲୁଗା ଦେଇ ମୋ ସଙ୍ଗେ କଥାବାର୍ତ୍ତା କରନ୍ତି ?" ବ୍ରାହ୍ମଣ ଆଶ୍ଚର୍ଯ୍ୟ ହୋଇ କହିଲେ, "ମିଥ୍ୟା କଥା ମହାରାଜ । ମନ୍ତ୍ରୀ କହିଲେ, "ମୋ ତୁଣ୍ଡରୁ ଦୁର୍ଗନ୍ଧ ବାହାରୁଛି ବୋଲି ଆପଣ ବିରକ୍ତ ହେଉଛନ୍ତି । ଏଣୁ କଥା କହିବା ବେଳେ ତୁଣ୍ଡରେ ସୁବାସଦ୍ରବ୍ୟ ରଖିବା ପାଇଁ, ମୁହଁରେ ଲୁଗା ଦେବାପାଇଁ ମନ୍ତ୍ରୀ ମୋତେ ଉପଦେଶ ଦେଲେ । ତାଙ୍କ କଥା ଅନୁସାରେ ମୁଁ ଏହି ଆଚରଣ କରୁଅଛି ।" ରାଜା ପ୍ରସନ୍ନ ମୁଖରେ କହିଲେ,—"ଆପଣ ଠିକ୍ କହୁଛନ୍ତି—ଧର୍ମ ଧାର୍ମିକକୁ ରକ୍ଷା କରେ । ଆଜି ଆପଣଙ୍କୁ ଧର୍ମହିଁ ରକ୍ଷା କରିଅଛି । ଅଧର୍ମରେ ମନ୍ତ୍ରୀଙ୍କର ଏ ଦଶା ଘଟିଛି ।"

ସେହି ଦିନଠାରୁ ରାଜା ବ୍ରାହ୍ମଣଙ୍କୁ ମନ୍ତ୍ରୀପଦ ଦେଲେ ଏବଂ ତାଙ୍କ ଉପଦେଶ ଅନୁସାରେ ରାଜ୍ୟ ଶାସନ କରିବାକୁ ଲାଗିଲେ ।

**ଧର୍ମରେ ଥାଏ ଯାର ମନ**
**ରହେ ସେ ସୁଖେ ଚିର ଦିନ ।**



# ଧ୍ରୁବ ତପସ୍ୟା

ଉତ୍ତାନପାଦ ବୋଲି ଜଣେ ରାଜା ଥିଲେ । ତାଙ୍କର ଦୁଇ ରାଣୀ । ଧ୍ରୁବ ସାନ ରାଣୀଙ୍କର ପୁଅ । ଧ୍ରୁବ ଦିନେ ବାପାଙ୍କ କୋଳରେ

ବସିବାକୁ ବାହାରିଲେ । ସେତେବେଳେ ତାଙ୍କର ସାବତ ମା ସେଠାରେ ଥିଲେ । ଧ୍ରୁବ ବାପାଙ୍କ କୋଳରେ ବସିବାକୁ ଯାଉଥିବା ଦେଖି ସାବତ ମା ତାଙ୍କୁ ବହୁତ ଗାଳି ଦେଇ ସେଠାରୁ ତଡ଼ିଦେଲେ ।

ଧ୍ରୁବ ଛୋଟ ପିଲା । ସେ କେତେକ ସହୁଥାନ୍ତେ, କାନ୍ଦି କାନ୍ଦି ଯାଇ ତାଙ୍କ ମା'ଙ୍କ ପାଖରେ ସବୁ କଥା କହିଲେ । ମା' କେତେ ବୁଝା କଲେ ମଧ୍ୟ ସେ ଆଉ ବୁଝା ହେଲେ ନାହିଁ । ଶେଷରେ ମା' କହିଲେ, "ମୋର ରଙ୍ଗଧନ, ବୁଝା ହୁଅ । ତୁ ତ ପୂର୍ବରେ ତପସ୍ୟା କରି ନାହୁଁ, ରାଜ ଆସନ ପାଇବୁ କିପରି; ରାଜା ହେବୁ କିପରି ? ଏ ଜନ୍ମରେ ଯଦି ତୁ ହରିଙ୍କୁ ତୃପ୍ତ କରିପାରିବୁ ତେବେ ତୁ ଯାହା ଲୋଡ଼ିବୁ ତାହା ପାଇବୁ ।" ମା'ଙ୍କ କଥା ଶୁଣି ଧ୍ରୁବ ପଚାରିଲେ, "ମା ହରି କିଏ ? ସେ କେଉଁଠାରେ ଅଛନ୍ତି ?" ।ମା ଉତ୍ତର କଲେ, "ହରି ସବୁଠାରେ ଅଛନ୍ତି । ସେ ସମସ୍ତଙ୍କର ବାପା । ସେ ସବୁ ପଦାର୍ଥର ଗଢ଼ିବା ଦେବତା । ସେ ବଡ଼ ଦୟାଳୁ । ଯେ ତାଙ୍କୁ ମାନେ, ପୂଜା କରେ ସେ ତାହାକୁ ସବୁ ଦିଅନ୍ତି ।"

ମା'ଙ୍କର ଏକଥା ଶୁଣି ଧ୍ରୁବଙ୍କ ମନରେ ଦମ୍ଭ ଆସିଲା । ସେ ହରି ନାମ ଚିନ୍ତା କଲେ । କ'ଣ କଲେ ସେ ହରିଙ୍କୁ ପାଇବେ ତାହା ଭାବିଲେ । ଦେଖୁଁ ଦେଖୁଁ ରାତି ହେଲା । ମା' ପୁଅ ଖାଇ ପିଇ ଶୋଇବାକୁ ଗଲେ । ମା'ଙ୍କର ନିଦ ହେଲା । ମାତ୍ର ପିଲାଟିର ଆଖିପତା ପଡ଼ିଲା ନାହିଁ । ସେ ଶେଯରେ ଖାଲି ପଡ଼ିରହି ଭାବିଲେ— ହରିଙ୍କୁ ପାଇବେ କିପରି ? ଏହିପରି ଭାବି ଭାବି ମା ଗାଢ଼ ନିଦରେ ଶୋଇ ପଡ଼ିଥିବାର ଦେଖି, କବାଟ ଫିଟାଇ ବାହାରକୁ ଆସିଲେ । ସେତେବେଳେ ଅଧରାତ—କଟିକଟିଆ ଅନ୍ଧାର, ମୁହଁକୁ ମୁହଁ

ଦିଶୁ ନାହିଁ । ସେ ଏକ ମନରେ ହରିଙ୍କୁ ଡାକି ଅନ୍ଧାରରେ ଚାଲିବାକୁ ଲାଗିଲେ । ପାହାନ୍ତିଆ ବେଳକୁ ସେ ଅଗମ୍ୟ ବନ ମଧ୍ୟରେ ଯାଇ ପହଞ୍ଚିଲେ । ମାତ୍ର ତାଙ୍କ ମନରେ ସେହି ହରି ଚିନ୍ତା ପୂରି ରହିଛି । କେତେ ବାଘ କେତେ ଭାଲୁ ତାଙ୍କ ପାଖଦେଇ ଗର୍ଜନ କରି ଚାଲିଛନ୍ତି, ତଥାପି ସେ ଅଚଳ ଅଟଳ । ସେତେବେଳେ ତାଙ୍କ ମନରେ ଅନ୍ୟ କିଛି ଭାବନା ନାହିଁ—କେବଳ ହରି ଚିନ୍ତା ।

ସେଠାରେ ନାରଦ ମୁନି ଧ୍ରୁବଙ୍କୁ ଭେଟିଲେ । ଧ୍ରୁବ ତାଦ ତାଦ ସବୁକଥା ମୁନିଙ୍କୁ କହିଲେ । ସେ ହରିଙ୍କୁ କିପରି ଭେଟିବେ ବୋଲି ପଚାରିଲେ । ନାରଦ ପିଲାଟିର ଭକ୍ତି ଓ ଜାଣପଣ ଦେଖି ସନ୍ତୁଷ୍ଟ ହେଲେ । ସେ କହିଲେ, "ବାବା, ଯମୁନା ତଟରେ ମଧୁବନ ବୋଲି ଗୋଟିଏ ସୁନ୍ଦର ବଣ ଅଛି । ସେହିଠାରେ ଲୋକଙ୍କର ଚହଳ ନାହିଁ । ତୁ ସେଠାକୁ ଯାଇ ଏକ ମନରେ ଏକ ଧ୍ୟାନରେ ଈଶ୍ୱରଙ୍କୁ ଡାକ । ସେ ନିଶ୍ଚୟ ତୋ' ଡାକ ଶୁଣିବେ ।" ଏହା କହି ନାରଦ ସେଠାରୁ ଚାଲିଗଲେ । ଋଷିଙ୍କ କଥାରେ ଧ୍ରୁବଙ୍କର ଅତି ବିଶ୍ୱାସ ବଢ଼ିଗଲା । ତାଙ୍କର ମନ ବଜ୍ରଠାରୁ ଅଧିକ ଟାଣ ହେଲା । ସେ ଆନନ୍ଦରେ ନାଚି ନାଚି, କରତାଳି ଦେଇ, "ହରି ବୋଲ ହରି ବୋଲ" କହି କହି ଚାଲିଲେ ।

ଅନେକ ଦିନ ପରେ ସେ ମଧୁବନରେ ଯାଇ ପହଞ୍ଚିଲେ । ସେଠାରେ ଗଛ, ଲତା, ପଶୁ, ପକ୍ଷୀ ସବୁ ତାଙ୍କୁ ହରିମୟ ବୋଧ ହେଲା । ଭଲ ସ୍ଥାନଟିଏ ଦେଖି ସେ ସେଠାରେ ଏକ ଧ୍ୟାନରେ ବସି ରହିଲେ । ଦିନ ପରେ ଦିନ ଚାଲିଗଲା । ତାଙ୍କୁ ଭୋକ ନାହିଁ କି ଶୋଷ ନାହିଁ । ନିଦ ବି ମାଡ଼ୁ ନାହିଁ । ସେହିପରି ଏକ ଚିତ୍ତରେ ସେ ସର୍ବମୟ ହରିଙ୍କୁ ଡାକିଲେ । ଏହିପରି ମାସ ପରେ ମାସ

ଚାଲିଗଲା । କେତେ ବର୍ଷା ହେଲା, କେତେ ତୋଫାନ ହେଲା, ଗଛପତ୍ର ସବୁ ଭାଙ୍ଗି ଚୁନ ଚୁନ ହୋଇଗଲା; ଧ୍ରୁବଙ୍କର କିଛି ଅନିଷ୍ଟ ହେଲା ନାହିଁ । ସେ ସେହିପରି ଧୀର ଓ ସ୍ଥିର । ଶୀତଋତୁ ଆସିଲା—ଘୋର ଶୀତ ଲୋକଙ୍କର ହାଡ଼ ଭାଙ୍ଗି ଦେଉଥାଏ । କେହି ଘରୁ ବାହାର ପାରୁ ନଥାନ୍ତି—ନିଆଁ ପାଖରେ ବସି ରହୁଥାନ୍ତି; ତଥାପି ଧ୍ରୁବଙ୍କର କୌଣସିଠାରେ ମଧ୍ୟ ଟାଙ୍କୁ ହେଲା ନାହିଁ । ସେ ସେହି ଧ୍ୟାନରେହିଁ ବସି ରହିଲେ । ତା ପରେ ଗ୍ରୀଷ୍ମକାଳ ଆସିଲା । ଖରାର ତାପ କେହି ସହି ପାରିଲେ ନାହିଁ । ଭୂଇଁ, ପବନ, ପାଣି ସବୁ ତାତିଗଲା । ଚାଲିଲେ ଗୋଡ଼ରେ ଫୋଟକା ହୋଇଗଲା । ଝାଞ୍ଜି ପବନ ଦେହକୁ ପୋଡ଼ିଦେଲା ପରି ଲାଗିଲା । ଶୋଷରେ ସମସ୍ତେ ବ୍ୟାକୁଳ ହୋଇ ପଡ଼ିଲେ । ପକ୍ଷିମାନେ ପୋଖରୀ କୂଳରେ ଥିବା ଗଛର ପତ୍ର ଗହଳରେ ଲୁଚି ରହିଲେ । ପଶୁମାନଙ୍କର ଅବସ୍ଥା କହିଲେ ନସରେ । ପ୍ରାଣିମାନଙ୍କୁ ବଡ଼ ବାଧିଲା । ମାତ୍ର ଧ୍ରୁବଙ୍କର କିଛି ହେଲା ନାହିଁ । ସେ ଯେ ସଂସାର ଛାଡ଼ିଛନ୍ତି—ମହା ସନ୍ନ୍ୟାସୀ—ଏକ ମନରେ ତପ କରି ବସିଛନ୍ତି ।

ଧ୍ରୁବଙ୍କର ଟାଣ ତପସ୍ୟାରେ ତ୍ରିପୁର କମ୍ପିଲା । ପଶୁ, ପକ୍ଷୀ କୀଟ, ପତଙ୍ଗ ଭୟରେ ରଡ଼ି ଛାଡ଼ିଲେ । ପୃଥିବୀ ରସାତଳକୁ ଗଲାପରି ବୋଧ ହେଲା । ଘରଦ୍ୱାର ସବୁ ମଡ଼ାଇ ବସିଲା ପରି ଲାଗିଲା । ସ୍ୱର୍ଗର ଦେବତାମାନେ ବଡ଼ ଭୟ କଲେ, ସମସ୍ତଙ୍କର ଆସନ ଟଳମଳ ହେଲା । ଦେବରାଜ ଇନ୍ଦ୍ର ମଧ୍ୟ ଭୟରେ ଥରିଲେ । ଦେବତାମାନେ ବୁଝି ପାରିଲେ, ଧ୍ରୁବଙ୍କର ତପସ୍ୟା ହେତୁରୁ ସବୁ କମ୍ପୁଛି । ତେଣୁ ତାଙ୍କ ତପସ୍ୟା ଭାଙ୍ଗିବା ପାଇଁ ସବୁ ଦେବତା ମଧୁବନରେ ପହଞ୍ଚିଲେ । କିଏ ହାତୀ ରୂପ ଧରି ଗର୍ଜ୍ଜନ କଲା, କିଏ ଭାଲୁ ରୂପ



ଧରି ଧ୍ରୁବଆଡ଼େ ଧାଇଁଲା—କିଏ ସିଂହରୂପ ଧରି ପାଟି ମେଲାଇ ଧ୍ରୁବଙ୍କୁ ଗିଳି ଦେବାକୁ ଧାଇଁଲା । କିଏ ସାପ ରୂପ ଧରି ଫଣା

ଝେଲି ଧୁଁ ଧୁଁ ଜଳି । ଗୃହଅନ୍ତେ ମାର ମାର ପିଟ ପିଟ ଶବ୍ଦ ହେଲା । ନାନା ପ୍ରକାର ଗର୍ଜନ ତର୍ଜନ ହେଲା । ତଥାପି ଧ୍ରୁବ ଅଟଳ । ତାଙ୍କ କାନକୁ କିଛି ଶୁଭିଲା ନାହିଁ—ଆଖିକି କିଛି ଦିଶିଲା ନାହିଁ । ଶୁଭିଲା କେବଳ ହରିଶବ୍ଦ—ଦିଶିଲା କେବଳ ହରିରୂପ ।

ଦେବତାମାନଙ୍କର ସବୁ ଚେଷ୍ଟା ବିଫଳ ହେଲା । କେହି କିଛି କରି ପାରିଲେ ନାହିଁ । ସମସ୍ତେ ଲାଜ ଦୁଃଖରେ ଫେରିଲେ । ଲୀଳାମୟ ହରି ଏ ସବୁ କୌଶଳ ଦେଖୁଥିଲେ । ଶିଶୁ ଭକ୍ତର ମନ ବଳ ବୁଝୁଥିଲେ । ଧ୍ରୁବଙ୍କର କଷ୍ଟ ଦେଖି ସେ ଆଉ ସମ୍ଭାଳି ପାରିଲେ ନାହିଁ । ନିଜ ରୂପ ଧରି ଧ୍ରୁବଙ୍କ ଆଗରେ ଆସି ଠିଆ ହେଲେ । ସେତେବେଳେ ଧ୍ରୁବଙ୍କ ଦେହରେ ବଡ଼ ବଳ ଆସି ପହଞ୍ଚିଲା । ଆନନ୍ଦ ଓ ଭକ୍ତିରେ ତାଙ୍କ ଦେହର ଲୋମ ସବୁ ଟାଙ୍କୁରି ଉଠିଲା—ଆଖିରୁ ଲୁହ ଝର ଝର ବହିଗଲା । ପ୍ରଭୁଙ୍କ ଗୋଡ଼ତଳେ ପଡ଼ି ବସି ସ୍ତୁତି କଲେ, "ପ୍ରଭୋ ! ଜଗତର ନାଥ ! ମୁଁ ସାନପିଲା—ତୁମର ସ୍ତବ ସ୍ତୁତି ଜାଣେ ନାହିଁ—ମା କହିଛନ୍ତି ତୁମେ ସବୁଠାରେ ଅଛ—ତୁମକୁ ସବୁ ଜଣା—ତୁମେ ସବୁ କରିପାର—ତୁମେ ବଡ଼ ଦୟାଳୁ—ଯେ ଯାହା ଲୋଡ଼େ ତୁମେ ତାହା ଦିଅ—ତୁମ ବିନା ଆଉ କିଏ ଅଛି, ମୁଁ ତାହାକୁ ଡାକିବି ? ମୋର ଦୁଃଖ କିଏ ଘୁଞ୍ଚାଇବ ? ହେ ହରି ! ହେ ଦୟାମୟ ! ହେ ଶରଣ ରକ୍ଷକ, ରକ୍ଷାକର ।" ଏହା କହୁ କହୁ ଧ୍ରୁବଙ୍କର ଚେତା ବୁଡ଼ିଗଲା, ସେ ତଳେ ପଡ଼ିଗଲେ । ଭଗବାନ୍ ଧ୍ରୁବଙ୍କ ସ୍ତୁତିରେ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, "ଉଠ ଧ୍ରୁବ ଉଠ—ମୁଁ ତୁମର ତପସ୍ୟାରେ, ତୁମର ସ୍ତୁତିରେ ବଡ଼ ସନ୍ତୁଷ୍ଟ ହୋଇଛି । ତୁମେ କଣ ମାଗୁଛ ମାଗ—ମୁଁ ତାହା ନିଶ୍ଚୟ ଦେବି ।" ଧ୍ରୁବ ଠିଆ ହୋଇ କରଯୋଡ଼

ଯୋଡ଼ି କହିଲେ, "ହେ ଭଗବାନ ! ମୋର ପିତାମାତାଙ୍କର କୋଳ ବା ରାଜସିଂହାସନ ଲୋଡ଼ା ନାହିଁ । ଲୋଡ଼ା କେବଳ ସବୁଠାରୁ ଉଚ୍ଚସ୍ଥାନ—ଯେଉଁଠାରେ କେବେହେଲେ କିଛି ଭୟ ନ ଥିବ—ସବୁବେଳେ ତୁମର ଦର୍ଶନ ତୁମର ଗାନ ହେଉଥିବ ।" ହରି କହିଲେ, "ହେଉ ବାପ, ସେହିପରି ହେଉ । ଅଳ୍ପଦିନ ମଧ୍ୟରେ ତୁମେ ଲୋଡ଼ିବା ଆସନ ପାଇବ । ଏବେ ଘରକୁ ଫେରିଯାଅ ।" ଏହା କହି ବିଷ୍ଣୁ ଅନ୍ତର୍ଦ୍ଧାନ ହେଲେ । ଧ୍ରୁବ ହରିନାମ ଗାଇ ଗାଇ ଘରକୁ ଫେରିଲେ ।

"ବିଷ୍ଣୁର ଭାବ ଯାର ଦେହେ,
ଯେ ଜୀବଠାରେ ଦୟା ବହେ,
ଶତ୍ରୁଙ୍କୁ ମିତ୍ର ସମ ଦେଖେ,
ତାହାକୁ ନାରାୟଣ ରଖେ ।"

ସ୍ୱର୍ଗରେ ଧ୍ରୁବଲୋକ ତିଆରି ହେଲା । ସେଥିରେ ଧ୍ରୁବ ରହିଲେ । ଏବେ ଯେଉଁ ଧ୍ରୁବ-ନକ୍ଷତ୍ର ଆକାଶରେ ଦେଖା ଯାଉଛି ସେହି କେବଳ ଧ୍ରୁବଲୋକ ।

---

## ରାମଚନ୍ଦ୍ର ଓ ମାଙ୍କଡ଼ ଭୋଜି

ରାମଚନ୍ଦ୍ର ରାବଣକୁ ମାରି ଲଙ୍କାରୁ ବାହୁଡ଼ି ଅଯୋଧ୍ୟାରେ ଆସି ପହଞ୍ଚିଲେ । ମାଙ୍କଡ଼ମାନେ ତାହାଙ୍କୁ ସାହାଯ୍ୟ କରିଥିଲେ ବୋଲି ଲକ୍ଷ୍ମଣ ସେମାନଙ୍କୁ ଗୋଟିଏ ଭୋଜି ଦେବାକୁ ଚାହାଁଲେ । ରାମଚନ୍ଦ୍ର ମାଙ୍କଡ଼ମାନଙ୍କର ସ୍ୱଭାବ ଜାଣନ୍ତି । ସେ ଲକ୍ଷ୍ମଣଙ୍କୁ କହିଲେ, "ଦେଖ ଲକ୍ଷ୍ମଣ, ଏବେ ଅଭିଷେକ ଉତ୍ସବର ଆୟୋଜନ ଚାଲିଛି,

ଏପରି ସମୟରେ ଏମାନଙ୍କୁ ଗାଁ ମଧ୍ୟରେ ଭୋଜି ଦେବା ମୋ ମନକୁ ଭଲଲାଗୁନାହିଁ । କାରଣ ମାଙ୍କଡ଼-ପ୍ରକୃତି ଅସ୍ଥିର । ଏମାନେ କେବେ ହେଲେ ସ୍ଥିର ହୋଇ ରହି ପାରିବେ ନାହିଁ । ଗ୍ରାମ୍ୟବାସୀ ଶଗଡ଼ରେ ହାତ ଦେବେ । କେଜାଣି କି ଅନିଷ୍ଟ କରିବେ । ମୋ'ର ଶଙ୍କା ହେଉଛି ।'' ଏହା ଶୁଣି ଲକ୍ଷ୍ମଣ ଅନେକ ପ୍ରାର୍ଥନା କରି କହିଲେ, "ଦେଖ ଭାଇ, ଏହି ଉତ୍ସବ ସମସ୍ତଙ୍କ ଲାଗି । ରାଜ୍ୟର ସମସ୍ତେ ଭୋଜି ଖାଇ ଆନନ୍ଦରେ ମାତିବେ । ଏମାନେ ଆମ୍ଭମାନଙ୍କ ପ୍ରାଣର ବନ୍ଧୁ । ଏମାନଙ୍କ ହେତୁ ଆମ୍ଭର ଏଡ଼େ ଭାଗ୍ୟ—ଏଣୁ ଏମାନଙ୍କୁ ଭୋଜି ଦେବାର ନାସ୍ତି କରନ୍ତୁନା ।'' ରାମଚନ୍ଦ୍ର ବଡ଼ ଦୟାଳୁ ପୁରୁଷ ! ସେ ଅନୁଜ ଭାଇଙ୍କ କଥା ଭାଙ୍ଗି ନପାରି କହିଲେ, "ତୁମ ଇଚ୍ଛା ଯାହା ତାହା କର—ମାତ୍ର ସାବଧାନ ହୋଇ ଗାଁ ବାହାରେ ଥିବା ଆମ ଫୁଲ ବଗିଚାରେ ସେମାନଙ୍କୁ ଭୋଜି ଦେବ ।"

ବଗିଚାରେ ରନ୍ଧାବଢ଼ା ହେଲା । ଖିରି, ଖେଚେଡ଼ି, ଦହିବରା ଲଡ଼ୁ କାକରା, ଜିଲାପି ଗଜା ତିଆରି ହେଲା । ସୁଆରମାନେ ବସି ନାନା ପ୍ରକାର ତିଅଣ, ଚଟଣି, ଭଜାଭଜି ତିଆରି କରିବାରେ ଲାଗିଲେ ।

ରନ୍ଧା ସରିଲା—ବଢ଼ା ଆରମ୍ଭ ହେଲା । ଅଙ୍ଗଦ, ହନୁମାନ, ସୁଗ୍ରୀବ ବଡ଼ ବଡ଼ ରଥୀ ଆଗେ ବସିଗଲେ । ତାଙ୍କ ପଛକୁ ସାନ, ତାଙ୍କ ପଛକୁ ଆହୁରି ସାନ, ଏହିପରି ମୁଣ୍ଡାଳିଙ୍ଗା ହୋଇ ବସିଗଲେ । ଶେଷକୁ ଗୋଟିଏ ପିଲାମାଙ୍କଡ଼ ବସିଲା । ଖଲି ପଡ଼ିଗଲା-ସେଥିରେ ନାନା ପ୍ରକାର ସୁସ୍ୱାଦୁ ଦ୍ରବ୍ୟ ବଢ଼ା ହେଲା ।

ସର୍ବ ଶେଷରେ ଲୁଅ ଭୋଳା ମଧ୍ୟ ବଢ଼ାଗଲା । ପରଷା ହେଲାବେଳେ ସେ ଟିଲ ମାଙ୍କଡ଼ ପଟରୁ ଅଁଳା ଭୋଳଟିଏ ଗଡ଼ିଯାଇ ଛଳେ ପଡ଼ିଗଲା । ଟିଲମାଙ୍କଡ଼ଟି ସେତ୍କ୍ଷଣ ତାହାକୁ ଗୋଟାଇ ଅଙ୍ଗୁଠିରେ ଧରି ମୁଖ ଭଙ୍ଗୀକରି ଦେଖିଲା ପୁଣି ତାକୁ ଚାପିଲା । ସେ ଭୋଲଟି ଛପି ହୋଇ ଅଙ୍ଗୁଠିରୁ ଖସିଯାଇ ଉପରକୁ ଉଠିଗଲା । ଏହାଦେଖି ଟିଲ ମାଙ୍କଡ଼ଟି କହିଲା, "ଇରେ, ତୁ ସାମାନ୍ୟ ଭୋଳଟିଏ ହୋଇ ତୋର ଏତେ ଗର୍ବ । ଆମ୍ଭେମାନେ ସମୁଦ୍ର ଡେଇଁ ଲଙ୍କା ଜୟ



କରି ଆସିଛୁ— ତୁ ଏବେ ଆମ ଆଗରେ ଗର୍ବ ଦେଖାଉଛୁ ।" ଏହା ଶୁଣି ଭୋଳଟି ଯେତେ ଉପରକୁ ଉଠିଥିଲା ଟିଲ ମାଙ୍କଡ଼ଟି ତାଠାରୁ

ଆଉ ଟିକିଏ ଉଚ୍ଚକୁ ଡେଇଁ ବସି ପଡ଼ିଲା । ଏହାଦେଖି ପାଖ ମାଙ୍କଡ଼ଟି ଭାବିଲା—ଏ ଛୁଆଟା କଣ ମୋ ଆଗରେ ଡେଇଁଛି । ମୁଁ ଏହାଠାରୁ ବେଶୀ ଡେଇଁବି । ଏହିପରି ଗୋଟାକ ଉପରୁ ଗୋଟେ ଉପରୁ ଉପରକୁ ଡେଇଁବାକୁ ଲାଗିଲେ । ଶେଷକୁ ବଡ଼ ବଡ଼ ରଥୀଙ୍କର ବାହା ଫୁଟିଲା । ସୁଗ୍ରୀବ ଡେଇଁ ମେଘରେ ଅଦୃଶ୍ୟ ହେଲେ । ଅଙ୍ଗଦ ଡେଇଁ ତାରାଲୋକରେ ମିଶିଗଲେ । ହନୁମାନ ତ ପବନର ପୁଅ—ସେ ଏପରି ଗୋଟାଏ ହୁଙ୍କାର କରି ଡେଇଁଲେ ଯେ, ସେ ଏକାବେଳକେ ଆକାଶରେ ଯାଇ ମିଶିଗଲେ । ଏମାନଙ୍କ ଡିଆଁରେ ବଢ଼ା ହେବା ଖାଦ୍ୟ ଜିନିଷ ସବୁ ନାରଖାର ହୋଇଗଲା । ବଗିଚାର ଗଛ ଆଉ କିଛି ରହିଲା ନାହିଁ ।

ଏମାନଙ୍କର ବଡ଼ ଡିଆଁ ଦେଖି, କଣ ହେଲା ବୋଲି, ଗାଁ ଗଣ୍ଡାର ଲୋକେ ଦୌଡ଼ି ଆସିଲେ । ରାମ ଲକ୍ଷ୍ମଣ ଓ ନଗରବାସୀ ସମସ୍ତେ କଣ ହେଲା ଦେଖିବାକୁ ସେଠାରେ ଯାଇ ପହଞ୍ଚିଲେ । ସେଠାର ଦୃଶ୍ୟ ଦେଖି ଅବାକ୍ ହେଲେ । ତାହାର କାରଣ ହନୁମାନଙ୍କୁ ପଚାରିଲେ । ହନୁମାନ କହିଲେ, "ଏହାର କାରଣ ମୁଁ ଜାଣେ ନା—ଅଙ୍ଗଦ ଓ ସୁଗ୍ରୀବ ଡେଇଁବାରୁ ମୁଁ ସେମାନଙ୍କଠାରୁ ଅଧିକ ଉଚ୍ଚକୁ ଡେଇଁଲି ।" ରାମଚନ୍ଦ୍ର ସେହିପରି ସୁଗ୍ରୀବଙ୍କୁ ପଚାରିଲେ । ସେ ତାଙ୍କ ପଡ଼ୋଶୀ ମାଙ୍କଡ଼କୁ ଦେଖାଇଦେଲେ । ଏହିପରି ଧାଡ଼ିକି ଧାଡ଼ି ସବୁ ମାଙ୍କଡ଼ଙ୍କୁ ପଚରା ହେଲା । ଶେଷରେ ସେହି ପିଲାମାଙ୍କଡ଼ ପାଖକୁ ଗଲେ । ସେ କୋଳଟିକୁ ଦେଖାଇ କହିଲା, "ଦେଖ, ଏହାର ଏତେ ଗର୍ବ ହୋଇଗଲା ଯେ ମୋ ହାତରୁ ଛାଡ଼ି ମୋ ଉପରକୁ ଡେଇଁଛି—ତେଣୁ ମୁଁ ତାଠାରୁ ଉଚ୍ଚକୁ ଡେଇଁଲି ।" ଏହାଶୁଣି ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ଚାହିଁ କହିଲେ, "ଦେଖିଲ

ଭାଇ ! ଏଥିଲାଗି ମୁଁ ତୁମକୁ କହୁଥିଲି, ମାଙ୍କଡ଼ମାନେ କେବେ ଅସ୍ତ୍ର ଛୋଇ ରହି ପାରନ୍ତି ନାହିଁ—ଦେଖ କଅଁଳ କୋଳଟି କାରଣରୁ ଚୋରଭଳି ଏବଂ ବଳିଗଲା ଭୂଇଁରେ ମିଶି ଗଲା ।" ସମସ୍ତେ ଦୁଃଖ ଓ ଲଜ୍ଜାରେ ମୁଣ୍ଡ ନପାଇ ପୋଡ଼ ବାହାରିଗଲେ । ଏହାକୁ କହନ୍ତି—

"ଶଣ୍ଢି ମାଡ଼ିଲେ ଗୋଠ ମାରେ"।



## ମୂଷା ଓ ସନ୍ନ୍ୟାସୀ

କେଉଁଠି ମାଳ ବୋଲି-ଗୋଟିଏ ଭାରି ବଣ । ସେହି ବଣର ଏକ ଗୁହାରେ ଜଣେ ସନ୍ନ୍ୟାସୀ ବାସ କରୁଥିଲେ ।

ଦିନେ ଗୋଟିଏ କୁଆ ଥଣ୍ଟରେ ମୂଷାଟିଏ ଧରି ଉଡ଼ିଯିବା ସମୟରେ ଥଣ୍ଟରୁ ମୂଷାଟି ଖସି ସେହି ଋଷିଙ୍କ ଆଶ୍ରମରେ ପଡ଼ିଗଲା । ଋଷି ମୂଷାଟିକୁ ଅତି ଯତ୍ନରେ ପାଳିଲେ । କେତେକ ଦିନ ପରେ ସେହି ସ୍ଥାନରେ ଗୋଟିଏ ବିରାଡ଼ି ଯାଇ ପହୁଞ୍ଚିଲା । ମୂଷା ବିରାଡ଼ିକୁ ଦେଖି ବଡ଼ ଭୟ କଲା । ତେଣୁ ଦୟାଳୁ ସନ୍ନ୍ୟାସୀ ମନ୍ତ୍ରବଳରେ ତାହାକୁ ବିରାଡ଼ି କରିଦେଲେ । ପୁଣି କେତେକ ଦିନ ପରେ କୁକୁରଟିଏ ସେ ସ୍ଥାନରେ ପହଞ୍ଚି ବିରାଡ଼ିକୁ ଆକ୍ରମଣ କଲା । ବିରାଡ଼ିଟି ଭୟ କରି ଋଷିଙ୍କର ଆଶ୍ରୟ ନେଲା । ଋଷି ଏବେ ତାକୁ ମନ୍ତ୍ରବଳରେ କୁକୁରଟିଏ କରିଦେଲେ ।

ଏହାର କିଛି ଦିନ ପରେ ସେ ବଣରେ ଥିବା ମହାବଳ ବାଘଟିଏ ସେହି କୁକୁରକୁ ଖାଇବା ପାଇଁ ଗୋଡ଼ାଇଲା ।

ସେ ବ୍ୟାକୁଳ ହୋଇ ପୁନର୍ବାର ଋଷିଙ୍କର ଆଶ୍ରୟ ନେଇଲା । ଋଷି ତାହାର ବ୍ୟାକୁଳତା ଦେଖି ତାହାକୁ ମନ୍ତ୍ର ବଳରେ ବାଘ କରି ଦେଲେ ।

ଫୁଲ ଫୁଟିଲେ ଜଗତ ବାସେ । ହାତୀ ବାଇଦ କୋଶେ, ଶଙ୍ଖ ବାଇଦ ସହସ୍ର କୋଶ । ଏ କାନରୁ ସେ କାନ ହୋଇ ଏ ଖବର ଗାଁକୁ ଗାଁ ବୁଲିଗଲା । ଋଷି ଆଶ୍ରମକୁ ହଜାର ହଜାର ଲୋକ ଗଲେ । କେହି ବାଘକୁ ଭୟ କଲେ ନାହିଁ । କାହିଁକି ନା, ସମସ୍ତେ ଜାଣନ୍ତି ଏ ଗୋଟିଏ ମୂଷା ଥିଲା—ଋଷି ହେତୁ ବାଘ



ହୋଇଛି । ପାଲଟାବାଘ ଏହି ସବୁ ଶୁଣି ଓ ଦେଖି ସମ୍ଭାଳି ପାରିଲା ନାହିଁ । ସେ ମନେ ମନେ ଭାବିଲା, ଋଷିଙ୍କୁ ଖାଇ ଦେଲେ ସେ

ବଣର ରଜା ହେବ । ପଶୁମାନେ ତାହାକୁ ମାନି ଚଳିବେ, ପୁଣି ଲୋକମାନେ ତାହାକୁ ଦେଖି ଭୟ କରି ପଳାଇ ଯିବେ । ସେ ଏହା ବରୁର ଋଷିଙ୍କୁ ଖାଇବାକୁ ଗଲା । ସନ୍ନ୍ୟାସୀ ତାହାର ମନର ଭାବ ବୁଝିପାରି ମନ୍ତ୍ର ବଳରେ ତାହାକୁ ପୁଣି ମୂଷାଟିଏ କରି ଦେଲେ । ଏଥି ଯୋଗୁଁ ଲୋକେ କହୁଥାନ୍ତି—"ପୁନର୍ମୂଷିକୋଭବ" ବା "ଯଥା ପୂର୍ବଂ ତଥା ପରଂ ।"

ଥିଲୁ ଯାହା ହେଲୁ ତାହା,
କିଆଁ ଫୁଲାଉ ବେନି ବାହା ?



ସମାପ୍ତ

ବ୍ରହ୍ମପୁର ଶାରଦା ପ୍ରେସ୍‌ରେ ଶ୍ରୀ ଶ୍ୟାମସୁନ୍ଦରପାଢ଼ୀଙ୍କ ଦ୍ୱାରା ମୁଦ୍ରିତ ।
୧୯୪୮